ଇଷ୍ଟଭୃତି
ଲେଖକ ଓ ସଂକଳକ :
ଶ୍ରୀ ହୃଷୀକେଶ ଆଚାର୍ଯ୍ୟ, ସ.ପ୍ର.ର, ସତ୍‌ସଙ୍ଗ
ଏମ୍.ଏ., ବି.ଏଡ୍., ଡି.ବି.ଏଲ୍., ଡି.ଟି.ଇ.
ସା/ପୋ. : ଲଥାଙ୍ଗ, ଭାୟା - ରାହାମା
ଜିଲ୍ଲା - ଜଗତ୍‌ସିଂହପୁର - ୭୫୪୧୪୦

ପ୍ରକାଶକ :
ଶ୍ରୀମତୀ ମଧୁମିତା ଆଚାର୍ଯ୍ୟ
ଟ୍ରଷ୍ଟବୋର୍ଡ ସଭ୍ୟା
'ରୁଦ୍ଧୀଶ ଆଚାର୍ଯ୍ୟ ସ୍ମାରକୀନ୍ୟାସ'
ସା/ପୋ. : ଲଥାଙ୍ଗ, ଭାୟା - ରାହାମା
ଜିଲ୍ଲା - ଜଗତ୍‌ସିଂହପୁର - ୭୫୪୧୪୦

ପ୍ରଥମ ପ୍ରକାଶ : ଦୋଳ ପୂର୍ଣ୍ଣିମା, ୨୦୧୫

ମୁଦ୍ରଣ :
ବନ୍ଦନା ଅଫ୍‌ସେଟ୍ ପ୍ରୋସେସ୍
ଖଟବିନ୍ ସାହି, କଟକ

ମୂଲ୍ୟ - ପଚାଶ ଟଙ୍କା ମାତ୍ର

**ISTABHRUTY**

*Written & Compiled by :*
**Sri Hrusikesh Acharya,** S.P.R., Satsang
Cell : 09937445211

*Published by :*
**Smt. Madhumita Acharya**
(W/o. Sri Saunik Kumar Panda)
Trustee, Rudhish Acharya Memorial Trust
At/P.O. : Lathang, Dist. : Jagatsinghpur-754140

**First Edition : March, 2015**

*Printed by :*
**Bandana Offset Process**
Khatbin Sahi, Cuttack

**Price : Rs. 50.00 only**

# ଉତ୍ସର୍ଗ

ପରମ-ଆରାଧ୍ୟ ଇଷ୍ଟଦେବ
ପରମପ୍ରେମମୟ ପରମ ଦୟାଲ ପୁରୁଷୋତ୍ତମ
ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ
ଶ୍ରୀପଦ ପଙ୍କଜରେ
ନିବେଦିତ...

"ଉଠ, ଜାଗ -
ବରଣୀୟ ଯିଏ ତାଙ୍କଠାରେ
ନିବୁଦ୍ଧ ହୁଅ;
ଉଷା ଆସିଛି ଆଜି
ଏ ଜୀବନେ ନବୀନ ହୋଇ
ନବୀନ ଉଦ୍ୟମେ - ଅର୍କ - ଆଲୋକେ
ଉଦ୍‌ବୁଦ୍ଧ କରି ତୋଳ
ତାଙ୍କରି ଜୀବନ ମନ୍ତ୍ରେ;
ଉଠ, ଆସନ ଗ୍ରହଣ କର, ପ୍ରାର୍ଥନା କର,
ପ୍ରବୁଦ୍ଧ ହୋଇ ସକଳ କର୍ମେ
ତାଙ୍କୁ ପରିପାଳନ କର;
ଶାନ୍ତି ଆସୁ, ସ୍ୱଧା ଆସୁ, ସ୍ୱସ୍ତି ଆସୁ -
ତୁମ ଜୀବନରେ - ଜୀବନ୍ତ ହୋଇ ।"

- ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର

# ପ୍ରସ୍ତାବନା

ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ସତ୍-ଦୀକ୍ଷାରେ ଦୀକ୍ଷିତ ପ୍ରତ୍ୟେକ ପ୍ରତ୍ୟହ ଯଜନ, ଯାଜନ, ଇଷ୍ଟଭୃତି ପରିପାଳନ କରିଥାଆନ୍ତି । ଦୀକ୍ଷିତ ଓ ଅଦୀକ୍ଷିତ ଅନେକଙ୍କ ମନରେ 'ଇଷ୍ଟଭୃତି' ସମ୍ବନ୍ଧରେ ନାନା ପ୍ରଶ୍ନ ତଥା ନାନାପ୍ରକାର ତର୍କ ପ୍ରାୟ ହିଁ ଦେଖିବାକୁ ପାଉ । ବିଶେଷତଃ ଦୀକ୍ଷୋତ୍ତର ଜୀବନରେ 'ଇଷ୍ଟଭୃତି' ପାଳନରେ ବିଭିନ୍ନ ପ୍ରକାରର ପ୍ରଶ୍ନ ସ୍ୱତଃ ହିଁ ଆସିଥାଏ । ଶ୍ରୀଶ୍ରୀଠାକୁର ଏ ସମ୍ବନ୍ଧରେ ବିଶଦ ଭାବେ ତଥା ପରିଷ୍କାର ରୂପେ ବୁଝାଇ ନାନା ପ୍ରକାର ବାଣୀ, ଛଡ଼ା ଓ ଆଲୋଚନା ମାଧ୍ୟମରେ କହିଥିଲେ ହେଁ ସମସ୍ତଙ୍କ ପାଖରେ ସେହି ସବୁ ଜାଣିବା ଓ ମନେ ରଖିବା ଅନେକ ସମୟରେ ସମ୍ଭବ ହୁଏନି । ଦୀକ୍ଷାଗ୍ରହଣ ସମୟରେ ଋତ୍ୱିକଗଣ ସଂକ୍ଷେପରେ କହିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଅଧିକରୁ ଅଧିକ ଜାଣିବା ଓ ଆଚରଣରେ ଫୁଟାଇ ତୋଳିବାର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଏଥିପାଇଁ 'ଇଷ୍ଟଭୃତି' ବିଷୟରେ ବିଭିନ୍ନ ଭାଷାରେ ଅନେକ ପୁସ୍ତକ ପ୍ରଣୟନ ହୋଇଛି ଏବଂ ହେଉଛି ମଧ୍ୟ । କିନ୍ତୁ ସର୍ବଜନ ଗ୍ରାହ୍ୟ ହେବାଭଳି ଏକ ସରଳ ତଥା ସଂକ୍ଷିପ୍ତ ବିବରଣୀର ଆବଶ୍ୟକତା ଅନୁଭବ କରି ଏହି କ୍ଷୁଦ୍ର ପ୍ରଚେଷ୍ଟାର ପରିକଳ୍ପନା। ବିଭିନ୍ନ ସତ୍ସଙ୍ଗରେ ଇଷ୍ଟଭୃତି ସମ୍ବନ୍ଧୀୟ ଆଲୋଚନା ଶୁଣି ଏବଂ ବିଭିନ୍ନ ପତ୍ରିକାରେ ଏହି ବିଷୟରେ ଲେଖା ପଢ଼ି, ଅନେକ ଗୁରୁଭାଇ ଓ ଶୁଭେଚ୍ଛୁବୃନ୍ଦ ପୁସ୍ତକ ଆକାରରେ ଏସବୁକୁ ଦେଖିବାପାଇଁ ଓ ସଂକ୍ଷେପରେ ଜାଣିବା ପାଇଁ ବହୁବାର ମୋତେ ଅନୁରୋଧ ଓ ପରାମର୍ଶ ଦେଇଆସିଛନ୍ତି । ଦୀକ୍ଷୋତ୍ତର ଯାଜନ ଓ ଅନୁଶୀଳନ ନିମିତ୍ତ ପୁସ୍ତକଟି ସହାୟକ ହେବ ବୋଲି ଆଶା ଓ ବିଶ୍ୱାସ । ସଂକ୍ଷିପ୍ତ ହେଲେ ହେଁ ସାରକଥା ଉପସ୍ଥାପନ କରାଯାଇଛି । ପାଠକଗଣ ଆହୁରି ଅଧିକରୁ ଅଧିକ ଜାଣିବାପାଇଁ ପ୍ରେରଣା ପାଇବେ ନିଶ୍ଚୟ । ପୁସ୍ତକଟିରେ ଶ୍ରୀଶ୍ରୀଠାକୁରଙ୍କ ବାଣୀ ଓ ଆଲୋଚନାକୁ ସଂଗ୍ରହ ଓ ସଂକଳିତ କରାଯାଇଛି । ଏହି ଦୀନ

ଲେଖକର ନିଜସ୍ୱ କିଛି କହିବାର ନାହିଁ । ବିଜ୍ଞ-ପାଠକ-ମଣ୍ଡଳୀ ପୁସ୍ତକ ପାଠ ସମୟରେ ଏହି ବିଷୟକୁ ସ୍ମରଣ ରଖିବେ ।

ପରମ ଦୟାଲ ଶ୍ରୀଶ୍ରୀଠାକୁରଙ୍କ ଅପାର କରୁଣାରୁ ପୁସ୍ତକଟି ଆତ୍ମ-ପ୍ରକାଶ କରିବାକୁ ଯାଉଛି । ଯେଉଁମାନେ ମୋତେ ପ୍ରତ୍ୟକ୍ଷଭାବେ ଓ ପରୋକ୍ଷଭାବେ ସାହାଯ୍ୟ ସହଯୋଗ କରିଛନ୍ତି, - ସେମାନଙ୍କୁ ଜଣାଉଛି ଆନ୍ତରିକ କୃତଜ୍ଞତା । ପ୍ରଣାମ ଜଣାଉଛି ପରମପିତା ପୁରୁଷୋତ୍ତମ ଶ୍ରୀଶ୍ରୀଠାକୁରଙ୍କ ରାତୁଲ ଚରଣରେ ଏବଂ ପୁରୁଷୋତ୍ତମ ନିଷଣ୍ଣ ଆଚାର୍ଯ୍ୟଦେବ ପରମପୂଜ୍ୟପାଦ ଶ୍ରୀଶ୍ରୀଦାଦା'ଙ୍କ ଶ୍ରୀଚରଣ ତଳେ । ଯାହାର ନିୟତ ପ୍ରେରଣା ଏହି ପୁସ୍ତକ ଲେଖାର ପଟ୍ଟଭୂମିରେ ଥିଲା - ମୋର ସେହି ଦିବଂଗତ ପୁତ୍ର ଋଦ୍ଧୀଶର ଆତ୍ମାର ଚିରଶାନ୍ତି ଓ ସଦ୍‌ଗତି ଇଷ୍ଟଦେବ ଶ୍ରୀଶ୍ରୀଠାକୁରଙ୍କ ପଦାରବିନ୍ଦରେ ପ୍ରାର୍ଥନା କରୁଛି ।

ମୋର କନ୍ୟା ଶ୍ରୀମତୀ ମଧୁମିତା ଓ ଜାମାତା ଶ୍ରୀମାନ୍ ଶୌନିକକୁମାର ପୁସ୍ତକ ପ୍ରକାଶନ ପାଇଁ ଆଗ୍ରହୀ ହେବା ସଙ୍ଗେ ସଙ୍ଗେ ତାଙ୍କର ଜ୍ୟେଷ୍ଠଭ୍ରାତା ତଥା ମୋର ଆତ୍ମଜ ସ୍ୱର୍ଗତଃ ଋଦ୍ଧୀଶର ସ୍ମୃତିକୁ ସଜଳ କରି ରଖିବାପାଇଁ 'ଋଦ୍ଧୀଶ ଆଚାର୍ଯ୍ୟ ମେମୋରିଆଲ୍ ଟ୍ରଷ୍ଟ'ର ଅନୁମୋଦନ କ୍ରମେ ଉକ୍ତ ନାମକୁ ବ୍ୟବହାର କରିବାକୁ ଇଚ୍ଛା ପ୍ରକାଶ କରିଥିବାରୁ ତାଙ୍କର ସାର୍ବିକ କଲ୍ୟାଣ ପାଇଁ ପରମଦୟାଲୁ ଶ୍ରୀଶ୍ରୀଠାକୁରଙ୍କ ଶ୍ରୀଚରଣରେ ପ୍ରାର୍ଥନା ଜଣାଏ ।

'ଇଷ୍ଟଭୃତି' - ଇଷ୍ଟଦେବତାଙ୍କ ଶ୍ରୀଚରଣରେ ନିବେଦିତ ପୁଷ୍ପଟିଏ । ଏହାର ସୁବାସରେ ଯଦି ଜୀବନ ସୁବାସିତ ତଥା ସୁରଭିତ ହୁଏ ଏବଂ ଏହାକୁ ପାଠ କରି ପାଠକ ବର୍ଗ ଯଦି ଆତ୍ମୋନ୍ନୟନରେ ପ୍ରେରଣାପୁଷ୍ଟ ହୋଇ ଜୀବନେଶ୍ୱରଙ୍କ ପ୍ରଦର୍ଶିତ ମାର୍ଗରେ ଆଗ୍ରହୀ ହୁଅନ୍ତି, ତେବେ ଏ ଦୀନ ଲେଖକର ପ୍ରଚେଷ୍ଟା ସାର୍ଥକ ହେବ । ଅଳମତି ବିସ୍ତରେଣ ।

ସତ୍‌ସଙ୍ଗ ବିହାର, ଜଗତ୍‌ସିଂହପୁର
ଶ୍ରୀପଞ୍ଚମୀ, ୨୦୧୫

ସ.ପ୍ର.ଋ

# ସୂଚିପତ୍ର

- ୨ା -

# ଇଷ୍ଟଭୃତି

ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ସତ୍‌ଦୀକ୍ଷାରେ ଦୀକ୍ଷିତ ବ୍ୟକ୍ତିଙ୍କୁ ପ୍ରତ୍ୟହ ନିୟମାନୁଯାୟୀ ଯଜନ, ଯାଜନ ଓ ଇଷ୍ଟଭୃତି କରିବାକୁ ହୁଏ । ଏହା ଆଧିଭୌତିକ, ଆଧିଦୈବିକ, ତଥା ଆଧ୍ୟାତ୍ମିକ ସାଧନାର ପ୍ରଥମ ସୋପାନ । ପ୍ରତିଦିନ ଅତି ପ୍ରତ୍ୟୁଷରେ ଅନ୍ନ-ଜଳାଦି ଗ୍ରହଣ ପୂର୍ବରୁ ଇଷ୍ଟଙ୍କ ଉଦ୍ଦେଶ୍ୟରେ ପ୍ରୀତି ଅର୍ଘ୍ୟ ନିବେଦନ କରିବା ହିଁ ଇଷ୍ଟଭୃତି । ଅଦୀକ୍ଷିତ ଏବଂ ଅନେକ ଦୀକ୍ଷିତ ବ୍ୟକ୍ତିଙ୍କର ଏହି 'ଇଷ୍ଟଭୃତି'କୁ ନେଇ ଅନେକ ପ୍ରଶ୍ନ । 'ଇଷ୍ଟଭୃତି' ସେତିକିବେଳେ ସାର୍ଥକ ହୁଏ, ଯେତେବେଳେ ଜୀବନରେ ସଂପୂର୍ଣ୍ଣ ସମର୍ପଣ ଇଷ୍ଟଙ୍କ ପ୍ରତି ହୁଏ । ଏହା ସାଧନାର ଚରମ ତଥା ପରମ ପ୍ରାପ୍ତି ଓ ପରିଣତି । ଯଜନ, ଯାଜନ, ଇଷ୍ଟଭୃତି ଅଭ୍ୟାସ କରୁ କରୁ କ୍ରମାଗତିରେ ଜୀବନ ଗନ୍ତବ୍ୟସ୍ଥଳକୁ ଆଗେଇ ଯାଏ ।

ଆର୍ଯ୍ୟମାନେ ପ୍ରତ୍ୟହ ଦେବଯଜ୍ଞ, ଋଷିଯଜ୍ଞ, ପିତୃଯଜ୍ଞ, ନୃଯଜ୍ଞ, ଓ ଭୂତଯଜ୍ଞ - ଏହି ପଞ୍ଚମହାଯଜ୍ଞ ଅନୁଷ୍ଠାନ କରୁଥିଲେ । ଯଜନ, ଯାଜନ, ଇଷ୍ଟଭୃତି ଭିତରେ ଏହି ପଞ୍ଚମହାଯଜ୍ଞର ଅନୁଷ୍ଠାନ ରହିଛି । ଶ୍ରୀଶ୍ରୀଠାକୁର କହିଛନ୍ତି - "ଋଷିମାନଙ୍କର ଦର୍ଶନ ସମୂହ ଭିତରେ ଯାହା କିଛି ରହିଛି ତାହାର ତତ୍ତ୍ୱାବଧାନରେ ବିନ୍ଦୁମାତ୍ର ବିମୁଖ ହୁଅନା, ସେଗୁଡିକ ତୁମମାନଙ୍କର ହିଁ କୃଷ୍ଟି ପ୍ରଜ୍ଞାବେଦୀ ।"

ଆର୍ଯ୍ୟାଚାରର ଷଟ୍‌କର୍ମ-ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ ଓ ପ୍ରତିଗ୍ରହକୁ - ଯଜନ, ଯାଜନ ଓ ଇଷ୍ଟଭୃତି ଭିତରେ ଶ୍ରୀଶ୍ରୀଠାକୁର ରଖିଛନ୍ତି । ଇଷ୍ଟଭୃତି ସର୍ବକାଳର, ସର୍ବସ୍ତରର, ସବୁଦେଶର, ସକଳ ଜାତିର

ମାନବ ସମାଜ ପାଇଁ ପ୍ରଯୁଜ୍ୟ । ସେଥିପାଇଁ ଶ୍ରୀଶ୍ରୀଠାକୁର ସମସ୍ତଙ୍କୁ ସତର୍କ କରାଇ କହିଛନ୍ତି -

"ହୁଅ ନା ଯୋଗୀ ହୁଅ ନା ଧ୍ୟାନୀ
ଗୋସାଇଁ ଗୋବିନ୍ଦ ଯାହାବି ହୁଅ
ଯଜନ-ଯାଜନ-ଇଷ୍ଟଭୃତି
ନକରିଲେ ତୁ କିଛି ବି ନୁହଁ ।"

ସତ୍‌ଦୀକ୍ଷା ମାଧ୍ୟମରେ ଆମେ ଜୀବନ ଦେବତା, ପରମପୁରୁଷ ପୁରୁଷୋତ୍ତମଙ୍କୁ ଗ୍ରହଣ କରୁ ଇଷ୍ଟ, ଶ୍ରେଷ୍ଠ, ଗୁରୁ, ଆଚାର୍ଯ୍ୟ, ଆଦର୍ଶ ରୂପେ । କେବଳ ମନେ ମନେ ଭଲପାଇବା ଯେପରି ବାସ୍ତବ ଭଲପାଇବାଠାରୁ ବହୁ ଦୂରରେ, ସେହିପରି ମନେ ମନେ ଭକ୍ତି, ଶ୍ରଦ୍ଧା, ପୂଜା-ଅର୍ଚ୍ଚନା ଇତ୍ୟାଦିର ବାସ୍ତବତା ସହିତ କୌଣସି ସଂପର୍କ ନଥାଏ । ଅତଏବ କାୟିକ ଭାବେ ବାସ୍ତବ ପ୍ରୀତି ଅର୍ଘ୍ୟରୂପେ ଇଷ୍ଟଭୃତି ନିବେଦନ କରିବାକୁ ହୁଏ । ଶ୍ରୀଶ୍ରୀଠାକୁର କହିଛନ୍ତି - "ଶରୀର ଓ ମନର ଯୁକ୍ତ ଆଗ୍ରହ ଇଷ୍ଟିତରେ କେନ୍ଦ୍ରାୟିତ ହୋଇ - ତାଙ୍କର (ଇଷ୍ଟଙ୍କର) ଭରଣ କାମନାରେ ଉପାର୍ଜନ କରି, ଦୈନନ୍ଦିନ ସର୍ବପ୍ରଥମେ ତାଙ୍କୁ ଯେଉଁ ଅର୍ଘ୍ୟ ନିବେଦନ କରାଯାଏ - ତା'କୁ ଇଷ୍ଟଭୃତି କୁହାଯାଏ ।"

## ଇଷ୍ଟ କିଏ ?

ଇଷ୍ଟ ହେଉଛନ୍ତି ନିଖିଳ ବ୍ରହ୍ମାଣ୍ଡର ଜୀବନଉତ୍ସ ସ୍ୱରୂପ । ସମଗ୍ର ସୃଷ୍ଟିର ସ୍ରଷ୍ଟା, ଯିଏ ଅନନ୍ତ, ଅସୀମ, ନିରାକାର, ନିର୍ଗୁଣ, ଯାହାଙ୍କୁ ଆମେ ଈଶ୍ୱର, ଭଗବାନ, ଗଡ୍, ଖୋଦା, ଆଲ୍ଲା ପ୍ରଭୃତି ନାମରେ ଅଭିହିତ କରୁ, ତାଙ୍କରି ବ୍ୟକ୍ତ ରୂପ ହେଉଛନ୍ତି - ଇଷ୍ଟ । ସେଇ ଅବ୍ୟକ୍ତ, ଅନନ୍ତ, ପରମାତ୍ମା ଯେତେବେଳେ ସସୀମ, ସାକାରରେ ମାନୁଷୀତନୁକୁ ଆଶ୍ରୟ କରି ଧରାଧାମରେ

ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ସେ ହୁଅନ୍ତି - ଇଷ୍ଟ, ଆଚାର୍ଯ୍ୟ, ଗୁରୁ, ଜୀବନର ଜୀବନ ସର୍ବସ୍ୱ । ଇଷ୍ଟ, ପ୍ରେଷ୍ଠ, ପ୍ରିୟପରମ ଇତ୍ୟାଦି ଶବ୍ଦ କେବଳ ତାଙ୍କ ପ୍ରତି ବ୍ୟବହୃତ ହୋଇଥାଏ । ଧର୍ମର ମୂର୍ତ୍ତପ୍ରତୀକ ସେ । ତାଙ୍କୁ ବାଦ୍‌ଦେଇ ଧର୍ମ କଥା ଚିନ୍ତା ବି କରାଯାଇ ପାରେନା । ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର କହିଛନ୍ତି -

"ଈଶ୍ୱର ଯିଏ ଜୀବନ ଉତ୍ସ
ଧୃତି ସମ୍ବେଗ ସବୁରି ଯିଏ
ଇଷ୍ଟ ତାଙ୍କରି ମୂର୍ତ୍ତ ପ୍ରତୀକ
ସେଇ ଐଶ୍ୱର୍ଯ୍ୟେ ମୂର୍ତ୍ତ ସିଏ ।"[୨]

"ପୁରୁଷୋତ୍ତମ ଆସନ୍ତି ଯେବେ
ଇଷ୍ଟ, ଆଚାର୍ଯ୍ୟ, ସେ ହିଁ ଗୁରୁ
ସେ ହିଁ ସବୁରି ଜୀବନ-ଦଣ୍ଡ
ସେ ହିଁ ସବୁରି ଜୀବନ ମେରୁ ।"[୩]

ଶ୍ରୀଶ୍ରୀଠାକୁର ପୁଣି କହୁଛନ୍ତି - "ଏକ ଅଦ୍ୱିତୀୟ ଯିଏ ତାଙ୍କୁ କହୁ ଆମେ ଈଶ୍ୱର । ତାଙ୍କୁ ତ ପାଉନା, ତାଙ୍କରି ରକ୍ତମାଂସ ସଙ୍କୁଳ ରୂପ ହେଲେ ଇଷ୍ଟ । ତାଙ୍କୁ ଅବଲମ୍ବନ କରି ଯେତେ ଚଳିପାରିବା, ତାଙ୍କ ନୀତି-ନିର୍ଦ୍ଦେଶ ଯେତେ ଆମେ ମୂର୍ତ୍ତ କରି ତୋଳି ପାରିବା, ସେତେ ହିଁ ଆମେ ସାର୍ଥକ ହେବା ।"

'ଇଷ୍' ଧାତୁରୁ 'ଇଷ୍ଟ' ଶବ୍ଦର ସୃଷ୍ଟି । ଏହାର ଅର୍ଥ ଇଚ୍ଛା କରିବା, ସଂସ୍କୃତ 'ଇଷ୍' ଧାତୁ ସହିତ ଇଂରାଜୀ 'ଉଇଶ୍'ର ଭାଷାଗତ ସାଦୃଶ୍ୟ ଅଛି । ଏହାର ମାନେ ମଧ୍ୟ ଚାହିଁବା, ଇଚ୍ଛା କରିବା । ମଣିଷ ତାଙ୍କୁ ହିଁ ଚାହେଁ - ଯେ ପ୍ରିୟ, ଭଲ ପାଇବାର କେନ୍ଦ୍ର । ତେଣୁ, ଏହି ସାତ୍ୱତ ପନ୍ଥୀ, ଶାଶ୍ୱତ ପ୍ରେମିକ ମହାନ୍ ବ୍ୟକ୍ତିତ୍ୱଙ୍କୁ 'ଇଷ୍ଟ' ନାମରେ ଅଭିହିତ କରାଯାଏ । ପୁନଶ୍ଚ, ସଂସ୍କୃତର ଯଜ୍-ଧାତୁରୁ ଇଷ୍ଟ ଶବ୍ଦର ସୃଷ୍ଟି, ସେତେବେଳେ ଏହାର ଅର୍ଥ - ଯିଏ ଯଜନୀୟ, ଅର୍ଥାତ୍ ପୂଜନୀୟ । ମଣିଷ ତା'ର ପ୍ରିୟ

ପରମଙ୍କୁ ପୂଜା କରି ଧନ୍ୟ ହେବାକୁ ଚାହେଁ । ଏଣୁ ଇଷ୍ଟ ହିଁ ଉପସ୍ଥିତ, ପୂଜ୍ୟ ଏବଂ ପ୍ରେୟ । ତାଙ୍କର ମାନବୀୟ ଲୀଳା ସମୟରେ ତାଙ୍କ ପରି ଆଉ କେହି ନଥାନ୍ତି । ସେ ହିଁ କେବଳ ତାଙ୍କର ଉପମା ।

ଇଷ୍ଟଙ୍କୁ ଜୀବନରେ ବରଣ କରିବାକୁ ହୁଏ ଦୀକ୍ଷା ମାଧ୍ୟମରେ । ତାଙ୍କରି ନିର୍ଦ୍ଦେଶିତ ଯଜନ, ଯାଜନ, ଇଷ୍ଟଭୃତି ପରିପାଳନ କରି ଚାଲିବାକୁ ହୁଏ ତାଙ୍କୁ ପାଇବା ପାଇଁ ।

ଇଷ୍ଟ କିଏ ? - ଏହି ପ୍ରଶ୍ନର ଉତ୍ତରରେ ଶ୍ରୀଶ୍ରୀଠାକୁର କହିଛନ୍ତି - "ଇଷ୍ଟ ହେଉଛନ୍ତି ସେ ଯାହାଙ୍କ ପାଖରୁ ମୁଁ ଦୀକ୍ଷା ନେଇଛି । ମୋର ଆଚାର୍ଯ୍ୟ, (Guide), ମୁଁ ଯାହାଙ୍କର ଧ୍ୟାନ କରେ । ସେ ମଙ୍ଗଳଅନୁଧ୍ୟାନ ପରାୟଣ । ମଣିଷର ଯେଉଁଥିରେ ସର୍ବତୋଭାବେ ଭଲ ହୁଏ ତାହାହିଁ ସେ କରନ୍ତି ।"[୫]

## ଇଷ୍ଟଭୃତି କାହିଁକି କରିବା ?

ଶ୍ରୀଶ୍ରୀଠାକୁର କହିଛନ୍ତି - "ଗୁରୁଙ୍କୁ ରୋଜ୍ ପ୍ରୀତି-ଅବଦାନ ସ୍ୱରୂପ ଭୋଜ୍ୟ ନିବେଦନ କରିବା ପ୍ରଥାଟା ଖୁବ୍ ଭଲ । ଏଥିରେ ଶରୀର ମନର ଗୋଟାଏ ଯୁକ୍ତ ଆଗ୍ରହ-ସନ୍ଦୀପ୍ତ ଟାଣ ଜଗାଏ ତାଙ୍କ ଉପରେ । ପିଲାଙ୍କ ପାଇଁ କରୁ ବୋଲି ଯେପରି ତା'ଉପରେ ଟାଣ ହୁଏ । ସକାଳେ ଉଠି ମୁହଁ ଧୋଇ ଧ୍ୟାନ-ସୁମିରଣ କରି ଭକ୍ତିଭରେ ନିବେଦନ କରି ରଖି ଦେଲି । ମାସାନ୍ତେ ଅନୁକଳ୍ପେ ଅର୍ଥ ପଠାଇ ଦେଲି । ଯେତେବେଳେ ଭୁଲ ହୁଏ, ସେତେବେଳେ ବୁଝାଯାଏ, ମୋର ଚଳନିର କୌଣସି ଭୁଲ ହେଉଛି । ହୁଏତ କୌଣସି ବିପଦ ଆସି ପାରେ । ତେଣୁ, ସେତେବେଳେ ବିହିତ ପ୍ରାୟଶ୍ଚିତ କରି କଠୋର ଭାବେ ଏହାକୁ ଆଙ୍କୁଡ଼ି ଧରିବା ଦରକାର ।"

"ଭୋଜ୍ୟଟା ବା ପଇସା ଇଷ୍ଟଭୃତିର ମୂଳ କଥା ନୁହେଁ, ଏହାର ମୂଳକଥା ହେଲା ଇଷ୍ଟଙ୍କୁ ଦେବାର ଆବେଗ, ତାଙ୍କୁ ନ ଖୁଆଇ ମୋତେ

ଭଲ ଲାଗେନା, ତେଣୁ ସର୍ବାଗ୍ରେ ମୋର ତାଙ୍କ ସେବାର ଆୟୋଜନ । ଏହି ଆବେଗ ଯେତେବେଳେ ମଣିଷ ଅନ୍ତରରେ ନିଶା ପରି ଲାଗିଯାଏ, ସେ ସେତେବେଳେ ତା'ର ସବୁ କରିବା ଭିତରେ ତାଙ୍କୁ ଅର୍ଘ୍ୟନନ୍ଦିତ କରିବାକୁ ଚାହେଁ । ଜୀବନରେ ଯେପରି ତା'ର ଗୋଟାଏ ଅଫୁରନ୍ତ ଉତ୍ସାହ ଲାଗିଯାଏ ।" ତାଙ୍କୁ ଦେବାର ଆକୁତିରୁ ତାଙ୍କ ପ୍ରତି ଭଲ ପାଇବା ବୃଦ୍ଧି ପ୍ରାପ୍ତ ହୁଏ ।

ମନେ ରଖିବାକୁ ହେବ ଯେ ଇଷ୍ଟଭୃତି ଚାନ୍ଦା ନୁହେଁ । କାୟମନୋବାକ୍ୟେ ଇଷ୍ଟଙ୍କର ପ୍ରୀତି ନିମିତ୍ତ ଠିକ୍ ଭାବେ ଇଷ୍ଟଭୃତି କଲେ, ଏହାର ଗୁଣ ବୁଝାଯାଇଥାଏ । କୌଣସି ପ୍ରକାର ଚାହିଦା ନେଇ ବା ଇଷ୍ଟଭୃତିର ଫଳ ସମ୍ପର୍କରେ ସନ୍ଦିହାନ ହୋଇ ପରୀକ୍ଷା କରିବାପାଇଁ ଏହା କରିବାକୁ ଗଲେ, ଇଷ୍ଟଭୃତି ଠିକ୍ ଭାବେ ହେଲା ନାହିଁ ବୋଲି ଜାଣି ନେବାକୁ ହେବ । ସ୍ୱତଃସ୍ଫୂର୍ତ୍ତ ଭାବରେ କରିଲେ ବିପଦ-ଆପଦ ସମୟରେ ଫଳ ବୁଝି ହୁଏ ।

ଶ୍ରୀଶ୍ରୀଠାକୁର କହିଛନ୍ତି, "ଇନ୍ଦ୍ରଜିତ୍ ଥିଲା ଅଜେୟ । ତାହାର ମୂଳ ଥିଲା ନିକୁମ୍ଭିଳା ଯଜ୍ଞ । କିନ୍ତୁ ଯେଉଁଦିନ ତା'ର ସେହି ଯଜ୍ଞରେ ବ୍ୟାଘାତ ହେଲା, ସେହିଦିନ ହିଁ ତା'ର ବିନାଶ ସମ୍ଭବ ହେଲା । ଆମେ ଯଦି ସେହିପରି ଇଷ୍ଟଭୃତି ଅତୁଟ ରଖୁ, ତା'ହେଲେ ଯେପରି ରକ୍ଷା କବଚଟା ହାତରେ ରୁହେ । ଭୋରୁ ଉଠି ନାମ-ଧ୍ୟାନ, ଇଷ୍ଟଭୃତି କରି ବାହାରିବାକୁ ହୁଏ । ସେଇଟା ଆୟୁଦ, ସ୍ୱାସ୍ଥ୍ୟଦ, ସବୁଦିଗରୁ ଭଲ । ଆଉ, ଏହିସବୁ କରି ଯେବେ ବାହାରିଲି, ସେତେବେଳେ ସେ ବାହାରିବା ହୁଏ ସେହିପରି ବାହାରିବା, ଏକବାରେ ଶକ୍ତିସମନ୍ୱିତ ହୋଇ ବାହାରିବା ।"

ଈଶ୍ୱର ବହୁ ହେବାକୁ ଇଚ୍ଛା କରି ବହୁରେ ପରିଣତ ହୋଇ ଚାଲିଛନ୍ତି । ଏହି ସୃଷ୍ଟିର ସୃଜନ ମୂଳରେ ରହିଛି ଈଶ୍ୱରଙ୍କର ଆତ୍ମୋତ୍ସର୍ଗ । ସେହି ପରମ ସତ୍ତାଙ୍କ ଦୟାରୁ ଆମେ ସମସ୍ତେ ସତ୍ତାୟମାନ ହୋଇଛୁ । ଏଣୁ ସେହି ପରମସତ୍ତା ପରମପିତାଙ୍କ ପ୍ରତି ଆମେ ସତତ କୃତଜ୍ଞ । ଏହି କୃତଜ୍ଞତାର ଅଭିବ୍ୟକ୍ତି ହେଉଛି - ଇଷ୍ଟଭୃତି, ଅର୍ଥାତ୍ ଇଷ୍ଟଙ୍କର ଭରଣ, ପୂରଣ, ପାଳନ, ପୋଷଣ । ଆଉ ଈଶ୍ୱରଙ୍କର ବ୍ୟକ୍ତରୂପ ହେଉଛନ୍ତି - ଇଷ୍ଟ ।

ଇଷ୍ଟଭୃତି କରିବା କାହିଁକି ? ନ କରି ତ ଅନେକେ ଖୁବ୍ ଭଲରେ ଅଛନ୍ତି ବୋଲି ଆମର ଧାରଣା । ଅନେକ ଧାର୍ମିକ ତଥା ଧର୍ମଧ୍ୱଜାଧାରୀମାନେ ଇଷ୍ଟଭୃତି କରନ୍ତି ନାହିଁ । ନିଜର ଖିଆଲ-ଖୁସୀ ମାଫିକ୍ ଦେବତାଙ୍କୁ ଭୋଗ ନିବେଦନ କରିଥାଆନ୍ତି ଏବଂ ସମାଜରେ ସେମାନେ ଧାର୍ମିକ, ସାଧୁ, ମହାପୁରୁଷ ଇତ୍ୟାଦି । ତେବେ ନିୟମିତ ନିତ୍ୟ ଇଷ୍ଟଭୃତି କରବା କଥା କାହିଁକି ?

ଇଷ୍ଟଭୃତି ମାନେ ଇଷ୍ଟଭରଣ । ପୁନଶ୍ଚ ଇଷ୍ଟଭୃତିରମାନେ ମଧ୍ୟ ଯଜ୍ଞ ନିଷ୍ପାଦନ । ଇଷ୍ଟଙ୍କର ତୁଷ୍ଟି ପାଇଁ ପ୍ରୟାସ । ଯେଉଁମାନେ ଇଷ୍ଟଙ୍କ ତୁଷ୍ଟିପାଇଁ ଏହି ଯଜ୍ଞ (ଇଷ୍ଟଭୃତି ନିବେଦନ) କରିଚାଲନ୍ତି, ସେମାନେ ଅଚିରେ ସାମର୍ଥ୍ୟବାନ୍ ହୋଇଉଠନ୍ତି । ଇଷ୍ଟମାନେ ମଙ୍ଗଳ, ଅଭିଳଷିତ, ପୂଜିତ, ପ୍ରଶଂସିତ । ଭୃତି ମାନେ ଭରଣ, ପୂରଣ, ପାଳନ, ଅତଏବ, ଇଷ୍ଟଙ୍କୁ ଭରଣ କରି ନିଜେ ପରିପୂରିତ ହେବା । ମଙ୍ଗଳକୁ ଭରଣ କରି (ଧାରଣ କରି) ନିଜେ ମଙ୍ଗଳର ଅଧିକାରୀ ହେବା । ଏହା ନିତ୍ୟ-ନିୟମିତ ।

## ଇଷ୍ଟଭୃତିରେ ଦୀକ୍ଷା ଚେତନ ରୁହେ

ସତ୍-ଦୀକ୍ଷା ଗ୍ରହଣ ମାଧ୍ୟମରେ ସତ୍-ମନ୍ତ୍ର ପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ନିତ୍ୟ ପ୍ରୀତି ଅବଦାନ ସ୍ୱରୂପ କାୟିକ ଭାବେ ଇଷ୍ଟଭୃତି ନିବେଦନ ନକଲେ ଦୀକ୍ଷା ଚେତନ ରୁହେ ନାହିଁ । ଏପରି ସମୟ ଆସେ, ଯେତେବେଳେ ଦୀକ୍ଷା ଗ୍ରହଣ କଥା ସ୍ମୃତି ପଟରୁ ଲିଭିଯାଇପାରେ । ସେଥିପାଇଁ ଦୀକ୍ଷାକୁ ଚେତନ ରଖିବାକୁ ହେଲେ 'ଇଷ୍ଟଭୃତି' ଅବଶ୍ୟ କରଣୀୟ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଏହାର ଇଙ୍ଗିତ ବହୁ ଭାବରେ ଆମେ ଦେଖୁଁ ।

"ଦୀକ୍ଷା ନେଲେ ଜାଣିଥା ମନେ
ଇଷ୍ଟଭୃତି କରିବାକୁ ହୁଏ
ଇଷ୍ଟଭୃତି ବିହୀନ ଦୀକ୍ଷା
କେବେ କ'ଣ ଚେତନ ରୁହେ ?" [୭]

"ଇଷ୍ଟେଚେତନ ବ୍ୟକ୍ତିତ୍ୱଟା
ମନ୍ତ୍ରେ ଚେତନ ମନ,
ଇଷ୍ଟଭୃତିରେ ଦୀକ୍ଷା ଚେତନ
ସେବାରେ ଚେତନ ଧନ ।"[୮]

ପୁନଶ୍ଚ, ଯେପରି କର୍ମ ନକଲେ ଶରୀର ନିଥର ତଥା ଆଳସ୍ୟ ପରାୟଣ ହୋଇ ପଡେ, ସଦାଚାର ବିନା ସାମାଜିକ ଶୃଙ୍ଖଳା ବ୍ୟାହତ ହୁଏ, ଧର୍ମ ଜୀବନକୁ ବଞ୍ଚେଇ ରଖି ବର୍ଦ୍ଧନମୁଖୀ କରେ, ସେହିପରି ଇଷ୍ଟଭୃତି ହିଁ ଦୀକ୍ଷାକୁ ବଞ୍ଚେଇ ରଖେ, - ସୁସୁପ୍ତିର ଗହ୍ୱରରୁ ଜୀବନକୁ ସାମଗ୍ରିକ ଭାବେ ରକ୍ଷା କରିଥାଏ । ଶ୍ରୀଶ୍ରୀଠାକୁର କହୁଛନ୍ତି -

"ଇଷ୍ଟଭୃତିରେ ଦୀକ୍ଷା ବଞ୍ଚେ
ଶରୀର ବଞ୍ଚେ କର୍ମେ
ସଦାଚାରେ ସମାଜ ବଞ୍ଚେ
ଜୀବନ ବଞ୍ଚେ ଧର୍ମେ ।"

ଅତଏବ, ଚତୁର୍ବର୍ଗଫଳ ପ୍ରାପ୍ତିର ସୂକ୍ଷ୍ମତମ ସୂତ୍ର ନିହିତ ଅଛି - ଇଷ୍ଟଭୃତିରେ । ଶ୍ରୀଶ୍ରୀଠାକୁର କହିଛନ୍ତି, -

"ଜୀବନ ଯଦି ଯାଏ ବି ତୋର
ଇଷ୍ଟଭୃତି ଛାଡ଼ ନାହିଁ
ଧର୍ମ-ଅର୍ଥ-କାମ-ମୋକ୍ଷର
ଏହି ନିଶାଣ ଭୁଲ ନାହିଁ ।"[୯]

"ଇଷ୍ଟଭୃତି ପରି ମାଲ୍ ହିଁ ନାହିଁ । ଇଷ୍ଟଭୃତି ଭିତର ଦେଇ ହିଁ ଦୀକ୍ଷା ଚେତନ ଥାଏ । ରୋଜ୍ ବାସ୍ତବରେ ଯାହାଙ୍କ ପାଇଁ କିଛି କରାଯାଏ ତାଙ୍କ ସଙ୍ଗେ ଗୋଟାଏ ବାସ୍ତବ ସଂପର୍କ ଗଢ଼ି ଉଠେ ହିଁ । ଇଷ୍ଟଙ୍କ ସହିତ ଗୋଟାଏ ବାସ୍ତବ ସଂପର୍କ ଯଦି ଆଜୀବନ ବଜାଇ ରଖାଯାଏ, ସେଥିରେ

ଦୀକ୍ଷା ସଜାଗ ଥାଏ । ଏଇ ସଂପର୍କକୁ ଅବଲମ୍ବନ କରି ଧୀରେ ଧୀରେ ଜୀବନରେ ପରିବର୍ତ୍ତନ ଆସିଥାଏ - ଅବଶ୍ୟ ଯଦି ନିତ୍ୟ କରଣୀୟଗୁଡ଼ିକ Sincerely (ଆନ୍ତରିକତା ସହକାରେ) କରି ଚାଲିବା ହୁଏ । ଇଷ୍ଟଙ୍କ ପାଇଁ ବାସ୍ତବ ଦାୟିତ୍ୱ ଗ୍ରହଣର ବ୍ୟାପାରଟା ପ୍ରାୟ ଉଠି ଯାଇଥିଲା । ସେଇଟା ନ ରହିଲେ ଧର୍ମ କିନ୍ତୁ ଗୋଟାଏ ଭାବାଲୁତାରେ ପର୍ଯ୍ୟବସିତ ହୁଏ । ଜୀବନରେ ବସି ଯାଏନା ।"

'ଅନେକେ ତ ଇଷ୍ଟଭୃତି ଅଭ୍ୟାସ-ବଶରେ ଯାନ୍ତ୍ରିକଭାବେ କରେ । ସେଥିରେ କ'ଣ ଖୁବ୍ ଭଲ ହୁଏ ?' - ଏହି ପ୍ରଶ୍ନର ଉତ୍ତରରେ ଶ୍ରୀଶ୍ରୀଠାକୁର କହିଲେ - "ଯେ ଭାବେ ପାରେ, Continuity (କ୍ରମାଗତ) ବଜାଇ ରଖି ଯଦି କରିଯାଏ, ସେଥିରେ ଭଲ ହୁଏ । ଏପରି - ଏପରି ଘଟଣା ଶୁଣିଛି ଯେ ଇଷ୍ଟଭୃତି ନକରି ହଠାତ୍ ଭୁଲ୍‌ରେ କିଛି ଖାଇ ପକାଇବା ପରେ ଜଣ-ଜଣଙ୍କର କୁଆଡ଼େ ବାନ୍ତି ହୋଇ ସେହି ଖାଦ୍ୟ ବାହାରି ଯାଏ । ତା' ମାନେ System (ବିଧାନ)ର ଭିତରେ ଅଭ୍ୟାସଟା ଏତେ ଦୂର ପଶି ଯାଇଛି । ପ୍ରଥମେ ମଣିଷ ସଜାଗଭାବେ ଅଭ୍ୟାସ ଗଠନ କରେ । ପରେ ଯେତେବେଳେ ସେଇଟା ରପ୍ତ ହୋଇଯାଏ ସେତେବେଳେ ସେ ସମ୍ବନ୍ଧରେ ଏତେ ଦୂର ସଚେତନ ଭାବ ନ ଥାଏ । କିନ୍ତୁ ତାହାମାନେ ଏହା ନୁହେଁ ଯେ ସେଥିରେ କୌଣସି ଫଳ ହେଉ ନାହିଁ । ସେଇଟା ଧୀରେ ଧୀରେ ସତ୍ତା ସହିତ ସହଜ ଭାବରେ ମିଶିଯାଏ । ଇଷ୍ଟାର୍ଥୀ ଅଭ୍ୟାସ ଏହିଭାବେ ଯେତେ କାଏମ୍ ହୁଏ, ସେତେ ହିଁ ଭଲ । ତେବେ କୌଣସି ପ୍ରତ୍ୟାଶାନେଇ ଇଷ୍ଟଭୃତି କରିବାକୁ ହୁଏନା । ଇଷ୍ଟ ମୋର ପରମପ୍ରିୟ, ତାଙ୍କର ଖୁସିଟାହିଁ ମୋର ଲାଭ - ସେଇ ବୋଧରେ ଯଜନ୍, ଯାଜନ୍, ଇଷ୍ଟଭୃତି କରିବାକୁ ହୁଏ ।"[୧୦]

## ଇଷ୍ଟଭୃତି ଓ ଆତ୍ମନିୟନ୍ତ୍ରଣ

ନିତ୍ୟ ଇଷ୍ଟଭୃତି କରିବା ଫଳରେ ଆତ୍ମନିୟନ୍ତ୍ରଣ ସହଜସାଧ୍ୟ ହୋଇଥାଏ । ବେପରୁଆ ଭାବେ ଚଳିବାର ଅଭ୍ୟାସ କମି କମି ଯାଏ । ମଣିଷ ସତ୍ ଓ ସନ୍ଦିପ୍ତ ହୋଇଉଠେ । ଇଷ୍ଟଭରଣ କର୍ମର ମୁଖ୍ୟ ଅନୁପ୍ରେରକ ହୁଏ । ଏଣୁ ତା'ର ଉଦରାନ୍ନ ସଂସ୍ଥାନୀ-କର୍ମ ରୂପାନ୍ତରିତ ହୁଏ ଇଷ୍ଟପୂଜାର ଉପକରଣ ସଂଗ୍ରହରେ । ସେ ଅସତ୍ ଉପାୟରେ କିଛି ରୋଜଗାର କରିବାକୁ ଯାଇ ପାରେନା । କାରଣ, ତା'ର ଉପାର୍ଜ୍ଜନର ଅଗ୍ରଭାଗ ଇଷ୍ଟଙ୍କୁ ଦେବାକୁ ହୁଏ, ତାହା ଯଦି କଳୁଷ ଯୁକ୍ତ, ତେବେ ସେହି ଅପବିତ୍ର ଆୟରୁ ଇଷ୍ଟଙ୍କୁ ଦେଇହୁଏନା । ଯାହା ଅସତ୍ ଉପାୟରେ ଲବ୍ଧ ଓ ଅପବିତ୍ର, ତାହା କ'ଣ ଇଷ୍ଟଦେବଙ୍କୁ ନିବେଦନ କରାଯାଇ ପାରିବ ? ଇଷ୍ଟଭୃତି କରିବା ମାଧ୍ୟମରେ ମଣିଷ ସତ୍ ଉପାୟରେ ଅର୍ଜ୍ଜନ କରିବାକୁ ପ୍ରୟାସୀ ହୁଏ, ଏବଂ କ୍ରମେ ସେ ସତ୍ ହୋଇଥାଏ । ଆଉ, ସତ୍‌ର ଅର୍ଥ ହେଉଛି, ଯାହା ଅସ୍ତିତ୍ୱର ପରିପୋଷକ । ଶ୍ରୀଶ୍ରୀଠାକୁର କହିଛନ୍ତି - "ନୌକା ଯେପରି ସ୍ରୋତର ଅନୁକୂଳରେ ଟାଣି ନିଏ, ଇଷ୍ଟଭୃତି ବି ସେପରି ମଣିଷକୁ ଟାଣି ନେଇ ଯାଏ । ଗୋଟିଏ ସୁକେନ୍ଦ୍ରିକ ଧନ୍ଦା ଲାଗିରହିବା ଦ୍ୱାରା ମଣିଷ ଠିକ୍ ଥାଏ । ଅବଶ୍ୟ ଚାନ୍ଦା ପରି କରିଲେ ହେବନି । ମୁଣ୍ଡରେ ଗୋଟିଏ ଚାପପରି ଲାଗି ରହିବା ଦରକାର । ସବୁକିଛି ମଧ୍ୟରେ ତାଙ୍କୁ ଉପଚୟୀ କରିବାର ବୁଦ୍ଧି ଦରକାର । ତା'ହେଲେ ମଣିଷ ବି ଉପଚୟୀ ହୁଏ । ଏହାଦ୍ୱାରା ମଣିଷ ନିୟନ୍ତ୍ରିତ ହୁଏ, ବିକଶିତ ବି ହୁଏ ।"[୧୧]

## ଇଷ୍ଟଭୃତି ଜୀବନର ଧନ୍ଦା

ଜୀବନ ଚଳନି ପଥରେ ନାନା କାର୍ଯ୍ୟ କରିବାକୁ ପଡିଥାଏ । ଜୀବିକାର୍ଜ୍ଜନ ନିମିତ୍ତ ବ୍ୟକ୍ତି ବିଶେଷଙ୍କୁ ବିଭିନ୍ନ ଧନ୍ଦାରେ ବ୍ୟସ୍ତ ରହିବାକୁ

ହୁଏ । ଆମେ ଯେପରି ଆମର ବିଭିନ୍ନ ଧନ୍ଦା ସମ୍ବନ୍ଧରେ ସଚେତନ ଥାଉ ଏବଂ ନିର୍ଦ୍ଧାରିତ ସମୟରେ ତାହା କରିଥାଉ, ସେହିପରି 'ଇଷ୍ଟଭୃତି'କୁ ଜୀବନର ଏକ ଅପରିହାର୍ଯ୍ୟ ଧନ୍ଦା ରୂପେ ପରିପାଳନ କରିଚାଲିବା ଉଚିତ୍ । ଇଷ୍ଟଭୃତି ଅର୍ଘ୍ୟ ସଂଗ୍ରହ କରିବା, ଠିକ୍ ସମୟରେ ନିବେଦନ କରିବା, ଉପଯୁକ୍ତ ସ୍ଥାନରେ ସଂରକ୍ଷଣ କରିବା, ତିରିଶ ଦିନରେ ହିଁ ନିଜେ ପଠାଇବା, ଅର୍ଘ୍ୟର ପରିମାଣକୁ ସମୟକ୍ରମେ ବୃଦ୍ଧି କରି ଚଳିବା ଇତ୍ୟାଦି ଯେପରି ମୁଣ୍ଡ ଭିତରେ ସବୁବେଳେ ଥାଏ । ଶ୍ରୀଶ୍ରୀଠାକୁର କହିଛନ୍ତି -

"ଇଷ୍ଟଭୃତିର ଧନ୍ଦା ହିଁ ଯଦି
ମଥାରେ ମହଜୁତ ରହିଲାନି
ଲକ୍ଷ ଟଙ୍କା କରିଲେ ବି ଦାନ
ଧର୍ମ ତୋତେ ବହିଲାନି ।"[୧୨]

"ସବୁଠାରୁ ତୋର ବଡ଼ଧନ୍ଦା
ଇଷ୍ଟଭୃତି ହେଲେ,
ସେହି ସମୟରୁ ଦେଖି ପାରିବୁ
ଜୀବନ କିପରି ଫଳେ ।"[୧୩]

ଶ୍ରୀଶ୍ରୀଠାକୁର ପୁଣି କହିଛନ୍ତି - "ଇଷ୍ଟାର୍ଥ ପୂରଣର ସକ୍ରିୟ ଧନ୍ଦା ଯଦି ପାଇ ବସେ, ତା' ଭିତର ଦେଇ ଗ୍ରହଦୋଷ ବି କଟିଯାଏ । କାରଣ, ସେତେବେଳେ ଗ୍ରହ ଆଉ ସେପରି ପ୍ରଭାବିତ କରି ପାରେନା । ସେଥିପାଇଁ ଅନେକଙ୍କ ଉପରେ ଅନେକ ସମୟରେ ବିଶେଷ - ବିଶେଷ ଚାପ ଦିଏ । ସେତେବେଳେ ଏଇ ବ୍ୟାପାରଟା ସମାଧାନ ନ କରିବା ପର୍ଯ୍ୟନ୍ତ ମନ ଭିତରେ ସାଧାରଣତଃ ଏଇ ଚିନ୍ତା ଓ ଚେଷ୍ଟା ଲାଗି ରହିଥାଏ । ଇଷ୍ଟାର୍ଥୀ ଧନ୍ଦା ସବୁବେଳେ ଉତ୍କଣ୍ଠା ଆବେଗପରି ଲାଗି ରହିବା ଦରକାର, ଯେପରି ଉଦ୍‌ବ୍ୟସ୍ତ କରିତୋଳେ । ତା' ଫଳରେ ଉଦ୍ଦୀପନୀ ଆକୂତି ହୁଏ, brain Cell (ମସ୍ତିଷ୍କ ଦୋଷ) active (ସକ୍ରିୟ) ହୋଇଉଠେ । ଇଷ୍ଟଭୃତି ଏଇ ଭାବରେ ନ କରିଲେ ଫଳ ହୁଏ ନାହିଁ । ରୋଜ୍ କରିବି, ଆହୁରି ଆହୁରି

କରିବି - ଏହି ଆକୁଳ ଆଗ୍ରହ ଭିତର ଦେଇ ବୁଦ୍ଧିବୃତ୍ତି ଓ କର୍ମବୃତ୍ତି ବଢ଼ିଯାଏ ଏବଂ ଇଷ୍ଟାର୍ଥେ ନିୟନ୍ତିତ ହୋଇଉଠେ ।"[୧୪]

"ଯେତେବେଳେ ଦେଖିବ ଇଷ୍ଟଙ୍କ ଧନ୍ଦା ମସ୍ତିଷ୍କରୁ ଦୂରେଇ ଯାଉଛି, ଅନ୍ୟ ଧନ୍ଦା ପ୍ରବଳ ହୋଇ ଉଠିଛି ଆଉ ସେଥିରେ ମତ୍ତ ହୋଇ ଇଷ୍ଟଙ୍କ ପାଇଁ କରିବାଟା ବାଦ୍ ପଡିଯାଇଛି, ସେତେବେଳେ ହିଁ ଧରିନିଅ, ତୁମେ ଦୁଷ୍ଟ ଗ୍ରହର ପଲ୍ଲାରେ ପଡିଯାଇଛ । ଏଇ ଅବସ୍ଥାରେ ଜୋର୍‌କରି ନିଜକୁ ଇଷ୍ଟାର୍ଥୀଚଳନ ଓ କରଣରେ ବ୍ୟାପୃତ କରିବାକୁ ହୁଏ । ସେଥିରେ ଦୁର୍ଭୋଗ ଅନେକ କମେ । ମୁଁ ଅନେକ ସମୟରେ ମଣିଷକୁ ଖାମାକା ଗୋଟାଏ - ଗୋଟାଏ କାମର କଥା କୁହେ । ଯେତେବେଳେ ଯାହାକୁ ଯେଉଁଟା କରିବାକୁ କୁହେ, ସବୁ ଅସୁବିଧା ସତ୍ତ୍ୱେ ବି ସେ ଯଦି ତାହା ନେଇ ଉଠି-ପଡି ଲାଗେ, ତାହା ନେଇ ହିଁ ଯଦି ସବୁ ସମୟରେ ଦେହ-ମନରେ ବ୍ୟସ୍ତଥାଏ, ତେବେ ଅନେକ କଟାଇ ଯାଇପାରେ । ଆଉ, ଯେଉଁମାନେ ସ୍ୱତଃ ହିଁ ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାରେ ଉଦ୍ଦାମହୋଇ ଚଳନ୍ତି - ସକ୍ରିୟ ତତ୍ପରତାରେ, - ଲକ୍ଷ କର୍ମ ବିପାକ ଯେ ସେମାନଙ୍କର କିପରି ଭାବରେ ଓଲଟି-ପାଲଟି ଯାଏ, ତାହା ସେମାନେ ଠଉରାଇ ପାରନ୍ତିନି । ଝଡଝଂଜା ଯେ ନଆସେ ତାହା ନୁହେଁ, କିନ୍ତୁ ତାହା ସେମାନଙ୍କୁ କାବୁ କରିପାରେ କମ୍ ହିଁ । କାରଣ, ସେମାନଙ୍କର ମନ ଥାଏ ଇଷ୍ଟଙ୍କଠାରେ, ଆଉ ବିପଦକାଳରେ ତାହାହିଁ ସେମାନଙ୍କର ନିରାପଦ ଆଶ୍ରୟସ୍ଥଳ ହୋଇ ଠିଆହୁଏ ।"[୧୫]

ଶ୍ରୀଶ୍ରୀଠାକୁର କହିଛନ୍ତି -

"ଇଷ୍ଟ ଭରଣ ଧନ୍ଦା ଯାହାର
ମଗଜ ଜଡ଼ାଇ ଥାଏ
ସବୁ ପ୍ରବୃତ୍ତି ଇଷ୍ଟାର୍ଥେ ତା'ର
ଗୁଚ୍ଛେଇ ଫୁଟି ଉଠେ ।

ସମାହାରୀ ଦୀପ୍ତ ନିଶାରେ
କର୍ମ-ସନ୍ଦୀପନା

ସେଇ ଆବେଗେ ଅଟୁଟ ହୋଇ
ଆଣେ ସମ୍ବର୍ଦ୍ଧନା ।
ସ୍ଥବିର ସ୍ନାୟୁର ସ୍ୱସ୍ଥଟାଣେ
ଚଳତ୍ ସ୍ନାୟୁର ଗତି,
ସଂବେଦନାର ସଂକ୍ରମଣେ
ଦିଏ ହିଁ ସାଡାରେ ନତି ।

ଆମ୍ଭରୀ ଦରିଦ୍ରତା
ଅଳସ ମସ୍କା ମାନ,
ଏମିତି ନିଶାର କ୍ରମୋତ୍କର୍ଷରେ
ଲଭେ ହିଁ ସେମିତି ତ୍ରାଣ ।
ସଂଗ୍ରାହୀ ତା'ର ଏପରି ଆବେଗ
ଶକ୍ତି ସରଞ୍ଜାମେ
ବୁଦ୍ଧି ସହ କୁଶଳତାରେ
ଆପତ୍କାଳେ ନଏଁ ।
ଉତ୍ରା ବିପଦର ଛାଇପରି
ଝଲକ୍ ଦୀପନ ରାଗେ
ସମ୍ପଦେ ସେ ଅଟୁଟ ଚଳେ
ଇଷ୍ଟ ଅନୁରାଗେ ।"

"ଛଡାଟାଡ ବେଶ୍ ହୋଇଛି । ତା' ଭିତରେ ମରକୋଚ ଭଙ୍ଗା ରହିଛି । ଇଷ୍ଟଭୃତି କଥାଟା ନୂଆ କିଛି ନୁହେଁ । ବେଦ, ଗୀତା, ବାଇବେଲ୍, କୋରାନ୍, ସଂହିତା ସର୍ବତ୍ର ଏହାର ଉଲ୍ଲେଖ ଅଛି । ଜେମସ୍‌ଙ୍କ କଥା ମଧ୍ୟରେ ମଧ୍ୟ ଏହାର ଆଭାସ ମିଳେ । ନିତ୍ୟ ପଞ୍ଚମହାଯଜ୍ଞ କଥା ହିନ୍ଦୁ ସନ୍ତାନ ଆଜି ଭୁଲି ଯାଇଛି । ସେଥିପାଇଁ ଦୁର୍ଦ୍ଦଶା ଆଜି ଘୋଟି ଆସିଛି । ଇଷ୍ଟଭୃତି ମଧ୍ୟରେ ସବୁ ଜିନିଷ ମୋଟାମୋଟି ଅଛି । ତେଣୁ, ଇଷ୍ଟଭୃତିଟାକୁ

ଯଦି ଭଲଭାବରେ ଚଳାଇ ନିଆଯାଏ, ଭ୍ରାତୃଭୋଜ୍ୟ ଓ ଭୂତଭୋଜ୍ୟ ଇତ୍ୟାଦି ସହ - ତା' ହେଲେ ଲୋକଙ୍କର ଚରିତ୍ର କର୍ମକ୍ଷମତା ଓ ଯୋଗ୍ୟତା ଯେପରି ବଢ଼ିବ ସେହିପରି ଦୁସ୍ଥମାନଙ୍କର ମଧ୍ୟ ଗୋଟାଏ ସାହାଯ୍ୟ ବ୍ୟବସ୍ଥା ହୋଇପାରିବ । ବଡ଼ ବଡ଼ Philosophy (ଦର୍ଶନ) ମଣିଷକୁ ନ ଶିଖାଇ ଛୋଟ ଛୋଟ ଟୁଟୁକା ଆଚରଣ ଭଲ କରି ଶିଖାଇବା ଢ଼େର ଭଲ । କରିବା ଭିତର ଦେଇ ଯେଉଁଜ୍ଞାନ ହୁଏ, ସେହି ଜ୍ଞାନ ହିଁ ହୁଏ କାର୍ଯ୍ୟକାରୀ ।"[୧୬]

## ଇଷ୍ଟଭୃତି ଦାନ ନୁହେଁ

ଇଷ୍ଟଭୃତି ଶ୍ରଦ୍ଧାର ସହ ନିବେଦନ କରିବାକୁ ହୁଏ । ଏହା ଦାନ ଦେବା ନୁହେଁ । ଆମେ ଦାନ ଦେଉଛେ ବୋଲି ଭାବିଲେ ଭୁଲ ହେବ । ଏହା ଜୀବନର ଏକାନ୍ତ ଆବଶ୍ୟକ । ଇଷ୍ଟ ଯିଏ, ଗୁରୁ ଯିଏ, ସେ ଆମର ଏକାନ୍ତ । ତାଙ୍କ ପାଇଁ କରିବାର ମାନସିକତା ଜୀବନକୁ ଉର୍ଦ୍ଧ୍ୱମୁଖୀ କରିଥାଏ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଦେଖୁ - "ଗୁରୁଙ୍କୁ ମୋର ବୋଲି ଜାଣିବାକୁ ହୁଏ - ମା, ବାପା, ପୁଅ ଇତ୍ୟାଦି ଘରର ଲୋକଙ୍କ କଥା ଭାବିଲାବେଳେ ଯେପରି ତାଙ୍କର (ଗୁରୁଙ୍କର) ମୁହଁ ବି ମନେ ପଡେ ।"[୧୭] ଶ୍ରୀଶ୍ରୀଠାକୁର କହିଛନ୍ତି - ".....ଇଷ୍ଟଭୃତି ଆମେ କରୁ ସତ, କିଂତୁ ଏହା ଫଳରେ ଯେ, କ'ଣ ହୁଏ ଜାଣୁନା । କିନ୍ତୁ ଜେମ୍ସ୍‌ଙ୍କ କଥା ମଧ୍ୟରେ ଏ ଜାତୀୟ ଅନୁଷ୍ଠାନର କାର୍ଯ୍ୟକାରିତା ସମ୍ବନ୍ଧରେ ଇଙ୍ଗିତ ମିଳିଲା । ଆଉ, ବାସ୍ତବରେ ତା'ର ଅଜସ୍ର ନଜିର ବି ଅଛି । ଇଷ୍ଟଭୃତି donation (ଦାନ) ପରି ଦେବାକୁ ହୁଏନି, ନିତ୍ୟ ନିବେଦନ କରିବାକୁ ହୁଏ । ଆଗ୍ରହ ଥିବା ଦରକାର - ତାହା ଦୈନନ୍ଦିନ ସମସ୍ତ କାମ ଭିତରେ ଅଜଣାରେ ଅନୁସ୍ୟୁତ ହୁଏ, ଆଉ ସେଗୁଡିକୁ adjust (ନିୟନ୍ତ୍ରଣ) କରେ । ତାହାର କ୍ଷମତା ଯେ କ'ଣ, ସେଇଟା ବିପଦ-ଆପଦ ସମୟରେ ବୁଝାଯାଏ । କେତେ ଯେ ଏହାର ଘଟଣା ଅଛି, ତା'ର ଇୟତ୍ତା ନାହିଁ ।"[୧୮]

# ଇଷ୍ଟଭୃତି କରିବାର ସମୟ

ପ୍ରତ୍ୟହ ଇଷ୍ଟଭୃତି କରିବାରେ ପ୍ରକୃଷ୍ଟ ସମୟ ହେଉଛି – ବ୍ରାହ୍ମମୁହୂର୍ତ୍ତ ବା ଅତି-ପ୍ରତ୍ୟୁଷ । ଶଯ୍ୟାତ୍ୟାଗ ପରେ ଶୁଚି-ଶୁଦ୍ଧ ହୋଇ ଜପ-ଧ୍ୟାନ କରିବାକୁ ହୁଏ ଏବଂ ତତ୍ପରେ ଇଷ୍ଟଭୃତି ଅର୍ଘ୍ୟ ଇଷ୍ଟଙ୍କ ଉଦ୍ଦେଶ୍ୟରେ ମନ୍ତ୍ରପାଠ ପୂର୍ବକ ନିବେଦନ କରିବା ହିଁ ବିଧି । ଏହି ପ୍ରସଙ୍ଗରେ ଶ୍ରୀଶ୍ରୀଠାକୁରଙ୍କ ବାଣୀଗୁଡିକ ମଧ୍ୟରେ ସ୍ପଷ୍ଟ ଇଙ୍ଗିତ ପାଉ ।

"ରାତେ ଘୁମିୟେ ଯଖନ୍ ଉଠିସ୍
ଆରାଧନା କରେ ତଖନ,
ଇଷ୍ଟଭୃତିର ଅର୍ଘ୍ୟଦିୟେ
କରିସ୍ ଯଜ୍ଞ ସଂସାଧନ ।"[୧୯]

ପୁନଶ୍ଚ –

"ଉଷା ଆଗରୁ ଉଠିବୁ ଜାଗି
ଶୌଚେ ଶୀତଳ ହେବୁ
ଜପ-ଧ୍ୟାନ, ଇଷ୍ଟଭୃତିରେ
ଈଶ୍ୱରଙ୍କ ଆଶିଷ ନେବୁ ।"

"ଅରୁଣ-ଉଷାର ଆଗେ ହିଁ କର
ରାତ୍ରି-ଶଯ୍ୟାର ସକଳ ତ୍ୟାଗ
ଏଇ ରାଗର ହିଁ ଅନୁରାଗେ
କର ଇଷ୍ଟଭୃତିର ଯାଗ ।"[୨୦]

ଅତଏବ, ଉଷା ସମୟର ଯଥେଷ୍ଟ ଆଗରୁ ଉଠି ଶୌଚାନ୍ତେ ନାମ ଧ୍ୟାନ କରି ଇଷ୍ଟଭୃତି କରିବାକୁ ହୁଏ । ଉଷା ସମୟ କାହାକୁ କୁହାଯାଏ ? ଖନା-ବଚନରେ ଅଛି –

"ଡାକେ ପକ୍ଷୀ ନ ଛାଡ଼େ ବସା
ତାକୁ ହିଁ ଖନା କହେ ଉଷା ।"

ଶ୍ରୀଶ୍ରୀଠାକୁର କହିଛନ୍ତି -

"ପ୍ରତ୍ୟହ ଇଷ୍ଟଭୃତି କର -
ଅତି ପ୍ରତ୍ୟୁଷରେ
ବିନା ସର୍ତ୍ତରେ ହିଁ
ଯଥାଶକ୍ତି ଯେପରି ତୁମର ଜୁଟେ
ତାହା ଦେଇ ହିଁ -
ତାଙ୍କରି ଯଥେଚ୍ଛ ବ୍ୟବହାର ପାଇଁ
ତୁମର ଉପସ୍ଥିତ ବୁଦ୍ଧି ସଜାଗ ରହିବ
ସ୍ୱତଃ-ସନ୍ଦୀପନୀ ସତର୍କ ସନ୍ଦିତ୍ସାରେ
ନିଜକୁ ସୁବିନାୟିତ କରି
ଅନେକ ଜଂଜାଳ ଏଡାଇ ଚଳି ପାରିବ
ଦୁନିଆରେ;
ଏହି ଇଷ୍ଟଭୃତିରୁ ଯିଏ ବା ଯେଉଁମାନେ
ତୁମକୁ ବିରତ କରିବେ,

ଠିକ୍ ଜାଣ -

ସେ ବା ସେମାନେ
ତୁମର ଶତ୍ରୁ ।"[୨୧]

ଉପର୍ଯ୍ୟୁକ୍ତ ବାଣୀଟି ଶ୍ରୀଶ୍ରୀଠାକୁର ପ୍ରଦାନ କରିବା ପରେ ଅନୁଲେଖକ ପ୍ରଶ୍ନ କଲେ - ଅତି ପ୍ରତ୍ୟୁଷରେ କହିଲେ କ'ଣ ସୂର୍ଯ୍ୟୋଦୟର ପୂର୍ବେ ବୁଝିବି ?

ଶ୍ରୀଶ୍ରୀଠାକୁର - ହଁ, ସେଥିଲାଗି 'ଅତି' କହିଛି ।

- କିନ୍ତୁ ସୂର୍ଯ୍ୟୋଦୟର ପୂର୍ବେ ହେଲେ ସେଟା ପୂର୍ବଦିନ ମଧ୍ୟରେ ଗଣ୍ୟ ହେବ ନା ?

ଶ୍ରୀଶ୍ରୀଠାକୁର - ନା, ବ୍ରାହ୍ମମୁହୂର୍ତ୍ତ ଅନେକ ଆଗରୁ ଆରମ୍ଭ ହୁଏ ।

- ଅନେକେ ଉଷାପାନ କରନ୍ତି, ସେଟା ଇଷ୍ଟଭୃତି ନକରି କରାଯାଏ ?

ଶ୍ରୀଶ୍ରୀଠାକୁର - ତା' ଇଷ୍ଟଭୃତି କରି ହିଁ କରିବା ଭଲ । ଇଷ୍ଟଭୃତି କରି ପକାଇଲେ ମଣିଷ ଅନେକ ପରିମାଣରେ vitally enriched (ଜୀବନ୍ତ ଶକ୍ତିରେ ସମୃଦ୍ଧ) ହୁଏ ।"[୨୨]

'ଆଲୋଚନା ପ୍ରସଙ୍ଗ'ରେ ଶ୍ରୀଶ୍ରୀଠାକୁର କହିଛନ୍ତି - "ଗୁରୁଙ୍କୁ ରୋଜ୍ ପ୍ରୀତି-ଅବଦାନ ସ୍ୱରୂପ ଭୋଜ୍ୟ ନିବେଦନ କରିବା ପ୍ରଥାଟା ଖୁବ୍ ଭଲ । ଏଥିରେ ଶରୀର ମନର ଗୋଟାଏ ଯୁକ୍ତ ଆଗ୍ରହ ସନ୍ଦୀପ୍ତ ଟାଣ ଗଜାଏ ତାଙ୍କ ଉପରେ । ପିଲା ପାଇଁ କରୁ ବୋଲି ଯେପରି ତା' ଉପରେ ଟାଣ ହୁଏ । ସକାଳେ ଉଠି ମୁଖ-ଚୁଖ ଧୋଇ ଧ୍ୟାନ-ସୁମୀରଣ କରି ଭକ୍ତିଭରେ ନିବେଦନ କରି ରଖି ଦେଲି । ମାସାନ୍ତେ ଅନୁକଳ୍ପେ ଅର୍ଘ୍ୟ ପଠାଇ ଦେଲି । ଯେତେବେଳେ ଏହାର ଭୁଲ୍ ହୁଏ, ସେତେବେଳେ ବୁଝାଯାଏ ଯେ, ମୋର ଚଳିବାର କୌଣସି ଗୋଳମାଳ ଅଛି । ହୁଏତ କୌଣସି ବିପଦ ଆସିପାରେ । ତେଣୁ ସେତେବେଳେ ବିହିତ ପ୍ରାୟଶ୍ଚିତ କରି କଠୋର ଭାବେ ଏହାକୁ ଧରି ରଖିବାକୁ ହୁଏ ।"[୨୩]

୧୯୭୧ ମସିହା ଅକ୍ଟୋବର ୪ ତାରିଖ ଦିନ ସର୍ବଭାରତୀୟ ସତ୍‌ସଙ୍ଗ କର୍ମୀ ସମ୍ମେଳନରେ ଶ୍ରଦ୍ଧେୟ ନରେନ୍ ଦତ୍ତ ପ୍ରଶ୍ନ କଲେ - "ଇଷ୍ଟଭୃତି ମନ୍ତ୍ରରେ ଅଛି - "ଆଜି ଏ ପ୍ରଭାତେ କର୍ମାରମ୍ଭେ ତୁମରି ଭୋଗର ଲାଗି.... ଇତ୍ୟାଦି । ଇଷ୍ଟଭୃତି କେତେବେଳେ କରିବି ? ହାତ ମୁହଁ ଧୋଇ ବାସି ଲୁଗା ବଦଳାଇ, ନା ସବୁକାମ ଆଗରୁ ବାସି ବିଛଣାରେ ବସି ?"

ଉତ୍ତରରେ 'ଶ୍ରୀଶ୍ରୀବଡ଼ଦା' କହିଲେ - "ମୁଁ ଚିରଦିନ ହିଁ ରାତି ଗୋଟାଏ/ସାଢ଼େ ଗୋଟାଏରେ ଉଠି ବିଛଣାରେ ବସି ନାମ-ଧ୍ୟାନ କରେ ।

ତା'ପରେ ସେହିଠାରେ ବସି ହିଁ ଇଷ୍ଟଭୃତି କରି ଚାରିଟା/ସାଢ଼େ ଚାରିଟା ବେଳେ ଶଯ୍ୟା ଛାଡ଼େ । ଯେ ଭକ୍ତର ମନ ସତତ ହିଁ ଇଷ୍ଟଙ୍କଠାରେ ନିବଦ୍ଧ ତା'ର ପୁଣି ବାସି ତଟକା ଅଛି ନା କ'ଣ ? ସେ ତ ସବୁ ସମୟରେ ହିଁ ପବିତ୍ର ।"

୧୯୭୩ ମସିହା ଅପ୍ରେଲ୍ ୧୫ ତାରିଖ କର୍ମୀ-ସମ୍ମେଳନରେ ଜନୈକ ଭାଇ ପ୍ରଶ୍ନ କଲେ - ଇଷ୍ଟଭୃତି କେତେବେଳେ କରିବୁ ?

ଉତ୍ତରରେ ଶ୍ରୀଶ୍ରୀବଡ଼ଦା' କହିଲେ - "ପ୍ରତ୍ୟୁଷରେ କରିବ, ଶ୍ରୀଶ୍ରୀଠାକୁରଙ୍କ ବାଣୀ ଅଛି । ବର୍ତ୍ତମାନ କେହିଯଦି ସକାଳ ୭/୮ଟାରେ ଉଠି ଇଷ୍ଟଭୃତି କରେ, ତେବେ ତାହା ତ ଆଉ ହେବନି । କାରଣ, ସେତେବେଳେ ପ୍ରତ୍ୟୁଷ ନ ଥାଏ । ତେବେ ଏଇଟା ଗୋଟାଏ ପଏଣ୍ଟ ସତ; ଅସଲ କଥା, ଦେଖିବାକୁ ହୁଏ ସେ ଆଦୌ ଇଷ୍ଟଭୃତି କରେ କି ନାହିଁ । ଶ୍ରୀଶ୍ରୀଠାକୁର କହିଛନ୍ତି, 'ଉଷା-ନିଶାୟ ମନ୍ତ୍ର-ସାଧନ, ଚଲା ଫେରାୟ ଜପ, ଯଥା ସମୟେ ଇଷ୍ଟ ନିଦେଶ ମୂର୍ତ୍ତକରାଇ ତପ ।' ଉଷା ତ ଆଉ ସକାଳ ୮ଟାରେ ନୁହଁ । ନିୟମ ମାନି ଚଳିବାକୁ ହୁଏ । ନିୟମମାନି ଚଳିଲେ ମଣିଷ ମିଷ୍ଟ ହୋଇ ଉଠେ, ଶକ୍ତିଶାଳୀ ଓ ତାଜା ହୁଏ । ସକାଳ ୮ଟା ପୂର୍ବରୁ ଅନେକଙ୍କ ସଂସାରରେ ଅନେକ କାର୍ଯ୍ୟ ସାଙ୍ଗ ହୋଇଥାଏ । ଯଦି କେହି ୮ଟାରେ ଉଠେ, ତେବେ ସେ ଆଉ ଉଷାରେ ଉଠିବାର ଆନନ୍ଦ ପାଏ ନାହିଁ ।"

୧୯୭୩ ମସିହା ଜୁଲାଇ ୧୫ ତାରିଖ କର୍ମୀ ବୈଠକରେ ଶ୍ରୀଶ୍ରୀବଡ଼ଦା' କହିଛନ୍ତି - ଆମେ କ'ଣ କରୁ ? ପ୍ରତ୍ୟୁଷରେ ତାଙ୍କୁ ସ୍ମରଣ କରି ନିଦରୁ ଉଠୁ । ତା'ପରେ ବାଥ୍‌ରୁମ୍‌କୁ ଯାଉ । ସେଠାରୁ ଆସି ଜପଧ୍ୟାନ ଅର୍ଥାତ୍ ମନ୍ତ୍ର ସାଧନ କରୁ । ଏହା ହିଁ ଯଜନ । ତା'ପରେ ମନପ୍ରାଣ ଢ଼ାଳି ଅନୁରାଗ ସହିତ ଇଷ୍ଟଭୃତି ଅର୍ଥାତ୍ ତାଙ୍କୁ ଆମର ଭକ୍ତି ଅର୍ଘ୍ୟ ନିବେଦନ କରୁ । ଏହାପରେ ପ୍ରାର୍ଥନାନ୍ତେ ଇଷ୍ଟଙ୍କୁ ନିବେଦନ କରି କିଛି ଖାଉ । ତତ୍ପରେ ଦଣ୍ଡନେଇ ତାଙ୍କୁ ପ୍ରଣାମ ଓ ସ୍ମରଣ କରି ଯାଜନରେ ବାହାରୁ ।"

ସୁତରାଂ ଇଷ୍ଟଭୃତି କରିବାର ସମୟ ବିଷୟରେ ଏକ ସୁସ୍ପଷ୍ଟ ଧାରଣା ଆମ୍ଭମାନଙ୍କର ଆସିଲା । ଇଷ୍ଟଭୃତି ପବିତ୍ରଭାବରେ ଶୁଦ୍ଧପୂତଃ ହୋଇ ପ୍ରତ୍ୟୁଷରେ ନିବେଦନ କରିବାକୁ ହୁଏ ଅନ୍ନ, ଜଳ ଇତ୍ୟାଦି ଗ୍ରହଣ ପୂର୍ବରୁ ।

## ଇଷ୍ଟଭୃତି ଅର୍ଘ୍ୟର ପରିମାଣ

ଇଷ୍ଟଭୃତି ହେଉଛି ଇଷ୍ଟଙ୍କୁ ଭୋଜ୍ୟ ନିବେଦନ କରିବା । ଭୋଜ୍ୟର ଆନୁମାନିକ ମୂଲ୍ୟ ଅର୍ଥ ଆକାରରେ ନିବେଦନ କରିବା । ବର୍ତ୍ତମାନ ସମାଜରେ ବିନିମୟର ମାଧ୍ୟମ ହେଉଛି ପଇସା ବା ମୁଦ୍ରା । ଅତଏବ ଅର୍ଘ୍ୟର ପରିମାଣ କେତେ ହେବା ବାଞ୍ଛନୀୟ ! ଶ୍ରୀଶ୍ରୀଠାକୁର କହିଛନ୍ତି -

"ଦୈନନ୍ଦିନ ଆହାର ଯେପରି
ଇଷ୍ଟଭୃତି ରଖିବୁ ସେପରି,
ଏଇଟା ଜାଣିଥା ନିହାତି କମ୍
ଯା'ଠାରୁ କମ୍‌ରେ କି ନୁହେଁ ବିଷମ ?
ପାରିଲେ କମ୍‌ରେ ଯାଅନା
କପଟ-ବ୍ରତୀ ହୁଅନା ।"[୨୪]

ଅତଏବ, ଇଷ୍ଟଭୃତି ଆହାର୍ଯ୍ୟାନୁପାତିକ ହେବା ଦରକାର । ଯେପରି ସାମର୍ଥ୍ୟକୁ ଫାଙ୍କି ଦିଆନଯାଏ, ଲକ୍ଷ୍ୟ ରଖିବାକୁ ହେବ । ହୁଏତ କମ୍ ଦେଇ ଇଷ୍ଟଭୃତି ଆରମ୍ଭ କରାଯାଇଛି, କିନ୍ତୁ ନିଜର ଆୟ ବଢ଼ିବା ସଙ୍ଗେ ସଙ୍ଗେ ଇଷ୍ଟଙ୍କୁ ଦେବାର ଆକୂତି ଯେପରି ବଢ଼େ । ଆଗ୍ରହର ସହିତ ଦେବାର ଭାବ ହିଁ ଅନୁରାଗ ବୃଦ୍ଧି କରିଥାଏ । ନିଷ୍ପାପର ଭାବେ କରୁ କରୁ ଆଶାନୁରୂପ ନଦେଇ ପାରିଲେ ବେଦନା ଲାଗିବ । ବେଦନା ନ ପାଇବା ପାଇଁ ସେତେବେଳେ ଆହୁରି ବଢ଼ାଇ ଚାଲିବ, ଆହୁରି ଦେଇ ଚାଲିବ । ଏହା ଫଳରେ ଯୋଗ୍ୟତା ମଧ୍ୟ ବଢ଼ିବ । ଅସଲ କଥା ହେଉଛି - ଇଷ୍ଟଙ୍କୁ ଭୋଜ୍ୟ ଦେବା ।

ଇଷ୍ଟଭୃତିର ପରିମାଣର ନିର୍ଦ୍ଦିଷ୍ଟ ସୀମା ନାହିଁ । ଦେବା ବ୍ୟକ୍ତିର ଆଗ୍ରହ ଉପରେ ନିର୍ଭର କରେ । ଅସମୟ, ଦୈବ ଦୁର୍ବିପାକ ଇତ୍ୟାଦି ସମୟରେ ଆଞ୍ଜୁଳାଏ ପାଣି, ଶୁଦ୍ଧ ବାଲି, ପୋଡାମାଟି, ଫୁଲ ଦେଇ ବି ମହା ମହା ବିପଦରୁ ରକ୍ଷା ପାଇବାର ଦୃଷ୍ଟାନ୍ତ ରହିଛି । ନିଜ ବେଳକୁ ଯଦି ଆମରସବୁ ଚଳୁଛି, ତେବେ ଇଷ୍ଟଙ୍କୁ ଦେବାବେଳକୁ କୁଣ୍ଠା ପ୍ରକାଶ କରିବା ଅନୁଚିତ୍ । ଶ୍ରୀଶ୍ରୀଠାକୁର କହିଛନ୍ତି -

"ଆପନ୍ ବେଲାୟ ସବ୍‌ଚଲେ ତୋର
ଇଷ୍ଟେଦିତେ ଆଁଟି କୁଣ୍ଠି,
ଉନ୍ନତି ତାଇ ତୋର ପଥ ହାରାଲୋ
ପାଓୟାର୍ ପଥ ଦିଲୁ ତୁଇ ଲୁଟି ।"

ପୁନଶ୍ଚ,

"ଇଷ୍ଟଭୃତିର ଭୋଜ୍ୟଇ ରୀତି
ଅନୁକଳ୍ପେ ଜୋଟେ ଯା'
ବିନିମୟେ ଭୋଜ୍ୟମେଲେ
ଏମନ୍‌ଦିୟେ ରାଖିସ୍ ତା' ।"

## ଅଶୁଚି ଅବସ୍ଥାରେ ଇଷ୍ଟଭୃତି

ଅଶୁଚି ଅଥବା ଅଶୌଚ ଅବସ୍ଥାରେ ଇଷ୍ଟଭୃତି ଓ ସ୍ୱସ୍ତ୍ୟୟନୀ ଅର୍ଘ୍ୟ ସ୍ୱୟଂ ନିବେଦନ ନକରି ପ୍ରତିନିଧି ସ୍ୱରୂପ ପରିବାରର ନିକଟ ଲୋକଙ୍କ ଦ୍ୱାରା ନିବେଦନ କରିବାକୁ ହୁଏ, ବା ପ୍ରତିବେଶୀ ସତୀର୍ଥଙ୍କ ମାଧ୍ୟମରେ ନିବେଦନ କରାଯାଏ । ଇଷ୍ଟଭୃତି ଓ ସ୍ୱସ୍ତ୍ୟୟନୀ ପ୍ରେରଣ ଦିନ ଅଶୁଚି ବା ଅଶୌଚ ଅବସ୍ଥାରେ ଥିଲେ, ନିଜେ ପ୍ରେରଣ ନକରି ଅପରଦ୍ୱାରା ପ୍ରେରଣ କରିବା ଉଚିତ୍ । ଶ୍ରୀଶ୍ରୀଠାକୁର କହିଛନ୍ତି - "ଗୁରୁ ତ ନାରାୟଣଙ୍କ

ଅନୁକଷ୍ଟ, ନାରାୟଣଙ୍କ ଭୋଗ ଯଦି ଅଶୌଚ ଅବସ୍ଥାରେ ନ ଦିଆଯାଏ, ତା'ହେଲେ ଗୁରୁଙ୍କୁ ଦିଆଯିବ କାହିଁକି ? ଏହି ସମୟରେ ଯାହାର ଅଶୌଚ ନାହିଁ ଏପରି କାହାକୁ ଡାକି ମନ୍ତ୍ର ବୋଲି ତାକୁ ଦେଇ କରାଇବାକୁ ହୁଏ । ଦୀକ୍ଷିତ ଲୋକ ନ ପାଇଲେ ସଶ୍ରଦ୍ଧ ଅଦୀକ୍ଷିତ ଲୋକ ଦେଇ ବି କରାଯାଏ ।"[୨୬]

ପ୍ରଫୁଲ୍ଲ ଦା' ପ୍ରଶ୍ନ କଲେ - "ଯଦି କାହାର ଅଶୌଚ ଭିତରେ ଇଷ୍ଟଭୃତି ପଠାଇବାର ଦିନ ପଡେ ତେବେ ସେ କ'ଣ ଏହିଦିନ ପଠାଇ ପାରିବ ?"

ଶ୍ରୀଶ୍ରୀଠାକୁର - "ହୁଁ, ଏଇ ଯାହାକୁ ଦେଇ ଇଷ୍ଟଭୃତି କରାଇବେ ତାକୁ ଦେଇ ହିଁ ପଠାଇବେ ।"

ପ୍ରଫୁଲ୍ଲ ଦା' - "ପୁଣି ଆଉ ଏକପ୍ରକାର ଅଛି । ଇଷ୍ଟଭୃତିର ପଇସା ତୋଳି ରଖିଦେଇ ଅଶୌଚାନ୍ତେ ସେଇଟା ନିବେଦନ କରିଲ ମନ୍ତ୍ର ପାଠ କରି କିନ୍ତୁ ଅଶୌଚ ମଧ୍ୟରେ ଇଷ୍ଟଭୃତି ପଠାଇବାର ଦିନ ପଡିଗଲେ ତ ତା' ପକ୍ଷରେ ଏହି ଅନିବେଦିତ ଅର୍ଘ୍ୟ ପଠାଇବା ମୁଶ୍କିଲ୍ ।"

ଶ୍ରୀଶ୍ରୀଠାକୁର - "ସେଥିପାଇଁ ଅନ୍ୟ କାହାଦ୍ୱାରା ରୋଜ୍‌ନିୟମିତ ଭାବେ କରାଇବା ଭଲ । ତା'ହେଲେ ଆଉ ଏଇ ପଠାଇବାର ଦିନ ପଠାଇବାର ଅସୁବିଧାରେ ପଡିବାକୁ ହୁଏ ନା ।"

ପ୍ରଫୁଲ୍ଲ ଦା' - "କୌଣସି ନନ୍ - ସତ୍‌ସଙ୍ଗୀକୁ ଦେଇ ଇଷ୍ଟଭୃତିର ମନ୍ତ୍ର କହି ତାକୁ ଦେଇ ବି ତ ଇଷ୍ଟଭୃତି କରାଯାଏ ?"

ଶ୍ରୀଶ୍ରୀଠାକୁର - "ହଁ, ପୁରୋହିତଙ୍କୁ ଦେଇ ଯେପରିଭାବେ କାମ କରାହୁଏ ସେପରି ଭାବେ ହିଁ ହୁଏ ।"[୨୭]

"... ତେବେ ଯେ କୌଣସି ଅଶୌଚ ଅବସ୍ଥାରେ ଇଷ୍ଟଭୃତି - ସ୍ୱସ୍ତ୍ୟୟନୀ ଅନ୍ୟ ଦ୍ୱାରା କରାଇବା ଭଲ । ଏପରିକି ଅଦୀକ୍ଷିତ କାହାକୁ ଦେଇବି କରାଇବା ହୁଏ । ବିଶେଷ ଅସୁବିଧାସ୍ଥଳେ ନିତ୍ୟ ଅର୍ଘ୍ୟ ରଖି ଅଶୌଚାନ୍ତେ ମନ୍ତ୍ର-ପାଠ କରି ନିବେଦନ କରାଯାଏ ।"[୨୮]

"ଅଶୌଚ ପ୍ରସଙ୍ଗରେ କଥା ଉଠିଲା । ଶ୍ରୀଶ୍ରୀଦାଦା – ଶ୍ରାଦ୍ଧାଧିକାରୀ ଯିଏ ତା'ର ହିଁ କାଳାଶୌଚ ହୁଏ, ଆଉ କାହାରି କାଳାଶୌଚ ହୁଏନା । କାଳାଶୌଚରେ ଇଷ୍ଟଭୃତି କରି ପାରିବେ ।

– ଅଶୌଚ ଅବସ୍ଥାରେ ବି ନିବେଦନ କରି ଖାଇବାକୁ ହୁଏ । ଯାହା ନିବେଦିତ ତା' ଗ୍ରହଣୀୟ । ଠାକୁରଙ୍କ ଦୀକ୍ଷା ଅଶୌଚ ବା କାଳାଶୌଚ ମଧ୍ୟରେ ବି ନିଆଯାଏ ।"[୨୯]

"ଜାତାଶୌଚରେ କରଣୀୟ ପ୍ରସଙ୍ଗରେ କଥା ଉଠିବାରୁ ଶ୍ରୀଶ୍ରୀଦାଦା କହିଲେ – ଜାତାଶୌଚରେ ଅର୍ଥାତ୍ ସନ୍ତାନ ଜନ୍ମରେ ପିତା ସ୍ନାନ କରିଲେ ହିଁ ଶୁଦ୍ଧ ।

ତେବେ ୬ ଦିନ ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ, ଅର୍ଘ୍ୟ ଅମନ୍ତକ ରଖିବେ, ଅଶୌଚାନ୍ତେ ସମସ୍ତ ଅର୍ଘ୍ୟ ଏକ ସଙ୍ଗେ ନେଇ ମନ୍ତ୍ର ପାଠକରି ନିବେଦନ କରିବେ ।"[୩୦]

ଅତଏବ, କୌଣସି ପରିସ୍ଥିତିରେ ଇଷ୍ଟଭୃତି ବନ୍ଦ୍ କରାଯାଇପାରିବ ନାହିଁ ।

## ଇଷ୍ଟଭୃତିର ଅପଳାପରେ

ଯଦି ଭୁଲ୍ ବଶତଃ ଇଷ୍ଟଭୃତି ଅର୍ଘ୍ୟ ନିବେଦନ ନକରି ଜଳ ବା ଆହାର୍ଯ୍ୟ ଗ୍ରହଣ କରାଯାଇଥାଏ, ତେବେ ଅନୁତପ୍ତ ହୃଦୟରେ ଯଜନଶୀଳ ହୋଇ ପୂର୍ବାହ୍ନରେ ହବିଷ୍ୟାନ୍ନ ଗ୍ରହଣ କରି ଦିନର ବାକି ସମୟ ଜଳ ବା ପଇଡ ପାଣି, ଅଥବା ଅଶକ୍ତ ପକ୍ଷେ କ୍ଷୀର ବା ଫଳରସ ସେବନ କରି ପ୍ରାୟଶ୍ଚିତ କରିବାକୁ ହେବ । ପରଦିନ ପ୍ରତ୍ୟୁଷରେ ଶୁଚିଶୁଦ୍ଧ ଭାବେ ଏହି ଅନିବେଦିତ ଅର୍ଘ୍ୟ ମନ୍ତ୍ରପାଠ କରି ଯଥାବିଧି ନିବେଦନ କରିବାକୁ ହେବ ଏବଂ ତତ୍ପରେ ପ୍ରତିଦିନର କରଣୀୟ ଅର୍ଘ୍ୟ ନିବେଦନ କରାଯିବ ।

## ଇଷ୍ଟଭୃତିର ନିବେଦିତ ଅର୍ଘ୍ୟ ନଷ୍ଟ ବା ଚୋରୀ ହେଲେ

ଇଷ୍ଟଭୃତିର ନିବେଦିତ ଅର୍ଘ୍ୟ ଅନ୍ୟ କାର୍ଯ୍ୟରେ ବ୍ୟୟ କଲେ ବା ହଜାଇ ଦେଲେ, ନଷ୍ଟ କିମ୍ବା ଅପହୃତ ହେଲେ, - ଅନୁତାପ ଓ ଖ୍ୟାପନ ସହ ଭିକ୍ଷା କରି ନଷ୍ଟ ବା ଅପହୃତ ଅର୍ଘ୍ୟ ସଂଗ୍ରହ କରି ପରଦିନ ହବିଷ୍ୟାନ୍ନ ଗ୍ରହଣ କରି ତତ୍‌ପରଦିନ ଏହି ସଂଗୃହୀତ ଅର୍ଥ ମନ୍ତ୍ର ପାଠପୂର୍ବକ ନିବେଦନ କରି ସଯତ୍ନରେ ରଖିବାକୁ ହେବ ।

## ମୁଦ୍ରା ନମିଳିଲେ ଇଷ୍ଟଭୃତି କେମିତି ଦିଆଯିବ ?

ଶ୍ରୀଶ୍ରୀବଡ଼ଦା' - ଇଷ୍ଟଭୃତିର ମନ୍ତ୍ରରେ ଅଛି - "ଆଜି ଏ ପ୍ରଭାତେ କର୍ମାରମ୍ଭେ' ତେଣୁ ସେଇ ସମୟରେ କରିବାହିଁ ଭଲ । ପ୍ରଭାତ ତ ସୂର୍ଯ୍ୟୋଦୟ ପରେ ନୁହେଁ । ତେଣୁ ସୂର୍ଯ୍ୟୋଦୟ ପୂର୍ବେ କରିବା ହିଁ ନିୟମ ।

ପ୍ରଶ୍ନ - ଆଜ୍ଞା, ଅନେକେ ପାଖରେ ପଇସା ନଥିଲେ ଫଳ ଦେଇ ଇଷ୍ଟଭୃତି କରନ୍ତି । ଏପରି କରିବା କ'ଣ ଠିକ୍ ?

- "ଫଳ ଦେଇ କିପରି ?"

- ଫଳ ଦେଇ ରଖନ୍ତି ପରେ ତା'ର ମୂଲ୍ୟ ଦେଇ ଦିଅନ୍ତି ।

- "ତା'ର ମାନେ ପରେ ପଇସା ଦେବେ । ପଇସା ରଖିବା ପରେ ସେଇ ଫଳ ଠାକୁର ଭୋଗରେ ଦେଇପାର, ସତ୍‌ସଙ୍ଗରେ ଦେଇପାର - ପରେ ସମସ୍ତଙ୍କୁ ବିତରଣ କରିଲ - ଏପରି ତ ସମସ୍ତେ କରନ୍ତି । ଅନେକେ ହିଁ ଚାଉଳ ଦେଇ କରନ୍ତି । ପରେ ସେଇ ଚାଉଳର ମୂଲ୍ୟ ଯାହା ହୁଏ ତା' ପଠାଇ ଦିଅନ୍ତି ।"

ମନେ ରଖିବାକୁ ହେବ ଯେ ଇଷ୍ଟଭୃତି ଅର୍ଘ୍ୟ, ଅର୍ଥାତ୍ ମୁଦ୍ରା ପୂର୍ବରୁ ଯୋଗାଡ଼ କରି ରଖିବା ଭଲ । ଯାହାଫଳରେ କି ଫଳ ବା ଚାଉଳ - ଏ ସବୁ ଆଡ଼କୁ ଯିବାକୁ ପଡିବ ନାହିଁ । ତେବେ ଆପଦ୍-କାଳ କଥା ଭିନ୍ନ ।

# ଇଷ୍ଟଭୃତି ପୂର୍ଣ୍ଣ ହୁଏ କେତେବେଳେ

"ଦିନ ଗୁଜୁରାଣ ଆୟରୁ କର
ଇଷ୍ଟଭୃତି ଆହରଣ
ଜଳ ଗ୍ରହଣର ପୂର୍ବେ ହିଁ ତାହା
କରିବୁ ଇଷ୍ଟେ ନିବେଦନ
ନିତ୍ୟ ଏପରି ନିୟମିତ
ଯେପରି ପାରୁଛୁ କରି ହିଁ ଯା'
ମାସଟି ଯେବେ ଶେଷ ହେବ ତୁହି
ଇଷ୍ଟସ୍ଥାନେ ପଠାଅ ତାହା
ଇଷ୍ଟସ୍ଥାନେ ପଠାଇ ଦେଇ
ଆହୁରି ଦୁଇଟି ଭୋଜ୍ୟରଖିବୁ
ଗୁରୁଭାଇ ବା ଗୁରୁଜନ
ଦୁଇଜଣଙ୍କୁ ସେଇଟି ଦେବୁ,
ପଡ଼ା-ପଡୋଶୀର ସେବା କାର୍ଯ୍ୟରେ
ରଖିବୁ କିନ୍ତୁ ଆଉ କିଛି
ଉପଯୁକ୍ତ ଆପଦ ଗ୍ରସ୍ତେ
ଦେବାକୁ ହେବ ପାରୁ ଯେତିକି
ଏ ସମସ୍ତ ଆଚରଣରେ
ଇଷ୍ଟଭୃତି ନିଖୁଣ ହୁଏ
ଏହା ନକରି ଇଷ୍ଟଭୃତି
ଜାଣିଥା କିନ୍ତୁ ପୂର୍ଣ୍ଣ ନୁହେଁ ।"[୩୧]

ଉପରୋକ୍ତ ଶ୍ରୀଶ୍ରୀଠାକୁରଙ୍କ ବାଣୀରୁ ଜାଣୁଛୁ ଯେ ଦିନ ଗୁଜୁରାଣ ଆୟରୁ (ରୋଜଗାରରୁ) ଇଷ୍ଟଭୃତି ଅର୍ଘ୍ୟ ସଂଗ୍ରହ କରି ଅତି ପ୍ରତ୍ୟୁଷରେ ଜଳଗ୍ରହଣ ପୂର୍ବରୁ ମନ୍ତ୍ର ପାଠ କରି ନିବେଦନ କରି ୩୦ ଦିନରେ ହିଁ

ଇଷ୍ଟଙ୍କ ସ୍ଥାନକୁ ଦକ୍ଷିଣା, ସଂଗଠନୀ ଓ ଋତ୍ୱିକୀ ଇତ୍ୟାଦି ସହ ପଠାଇବାକୁ ହେବ । ଦୁଇଟି ଭୋଜ୍ୟ ଦୁଇଜଣ ଗୁରୁଭାଇ ବା ଗୁରୁଜନଙ୍କୁ ଶ୍ରଦ୍ଧାସହ ଦେବାକୁ ହେବ । ପଡା-ପଡୋଶୀଙ୍କ ସେବାପାଇଁ କିଛି ଅଲଗା ଭାବେ ସ୍ୱତନ୍ତ୍ର ସ୍ଥାନରେ (ଡବା/ମୁଣି ଇତ୍ୟାଦି) ରଖିବ ଏବଂ ଉପଯୁକ୍ତ ଆପଦଗ୍ରସ୍ତରେ ସେହି ଅର୍ଥକୁ ଦେବାକୁ ହେବ । ଏହିସବୁ ନକରିଲେ ଇଷ୍ଟଭୃତି ପୂର୍ଣ୍ଣ ହୁଏନି । ପୂର୍ଣ୍ଣାଙ୍ଗ ଇଷ୍ଟଭୃତି କରିବାକୁ ହେଲେ ଏଗୁଡିକୁ ଅବଶ୍ୟ ଆଚରଣରେ ଅଭ୍ୟାସ କରି ନିୟମିତ ମାନି ଚଳିବାକୁ ହୁଏ ।

ନିଖୁଣ ଭାବେ ଇଷ୍ଟଭୃତି କରିବାକୁ ହେଲେ କେତୋଟି ପଏଣ୍ଟ ସର୍ବଦା ମନେ ରଖିବାକୁ ହେବ ।

୧) ଇଷ୍ଟଭୃତି କରିବା ସମୟରେ କୌଣସି ସ୍ୱାର୍ଥବୁଦ୍ଧି ବା ପ୍ରତ୍ୟାଶା ଯେପରି ନ ରୁହେ । ଏହା ହେଉଛି ଅପ୍ରତ୍ୟାଶୀ ଭକ୍ତି ଅବଦାନ ।

୨) ଇଷ୍ଟଭୃତି କରିବାକୁ ହେବ ଅତି ପ୍ରତ୍ୟୁଷରେ, ସୂର୍ଯ୍ୟୋଦୟର ପୂର୍ବରୁ ।

୩) ମାଆ ଯେପରି ପିଲାକୁ ଅତି ଆଗ୍ରହରେ କ୍ଷୀର ଖୁଆଏ ସେହିପରି ଆଗ୍ରହ ଓ ଆକୁତି ନେଇ ଇଷ୍ଟଭୃତି କରିବାକୁ ହେବ ।

୪) ଦୈନିକ ଆୟ-ଉପାର୍ଜ୍ଜନରୁ ଇଷ୍ଟଭୃତି ଅର୍ଘ୍ୟ ସଂଗ୍ରହ କରି କରିବାକୁ ଚେଷ୍ଟା କରିବା ।

୫) ଦୈନିକ ଆହାର୍ଯ୍ୟ-ଅନୁପାତିକ ଇଷ୍ଟଭୃତି ଯେପରି ରଖାଯାଏ - ସେଇ ଧନ୍ଦା ମୁଣ୍ଡରେ ରହିବା ଦରକାର ।

୬) ଇଷ୍ଟଭୃତି ଇଷ୍ଟଦେବତାଙ୍କୁ ଉପଯୁକ୍ତ ସାଂସ୍କୃତିକ ଶୁଚିତା ନେଇ ନିବେଦନ କଳାପରେ ସୁନ୍ଦର ଭାବେ ପରିଷ୍କାର ସ୍ଥାନରେ ଉପଯୁକ୍ତ ପାତ୍ରରେ ସଂରକ୍ଷଣ ଯେପରି କରାଯାଏ ।

୭) ତ୍ରିଶଦିନ ପୂର୍ଣ୍ଣ ହେଲେ ଏହି ଇଷ୍ଟଭୃତି ସଦକ୍ଷିଣା, ସଂଗଠନୀ, ଋତ୍ୱିକୀ ଇତ୍ୟାଦି ସହ ଇଷ୍ଟସ୍ଥାନକୁ ପଠାଇବାକୁ ହେବ ।

୮) ଇଷ୍ଟଭୃତି ପଠାଇ ଦୁଇଜଣ ଇଷ୍ଟଭ୍ରାତାଙ୍କୁ ଦୁଇଟି ଭୋଜ୍ୟ ପ୍ରଦାନ କରିବାକୁ ହେବ ।

୯) ପଡା-ପଡୋଶୀଙ୍କ ସେବାପାଇଁ ଅଲଗା କିଛି ରଖିବାକୁ ହେବ । ଏବଂ ଉପଯୁକ୍ତ ଆପଦ-ଗ୍ରସ୍ତଙ୍କୁ ଉପଯୁକ୍ତ ସମୟରେ ଦେବାକୁ ହେବ ।

ଏହିଗୁଡିକ ନିଖୁଣ ଭାବେ କରିବା ପାଇଁ ଯଜନ, ଯାଜନର ଆବଶ୍ୟକତାକୁ ମଧ ଗୁରୁତ୍ୱ ଦେବାକୁ ହେବ ।

## ଭୂତ ଭୋଜ୍ୟ ଓ ଭ୍ରାତୃ ଭୋଜ୍ୟ

"ତେଣୁ ଇଷ୍ଟଭୃତି ଧର୍ମର ଅର୍ଥାତ୍ ଜୀବନ ବୃଦ୍ଧିର ଗୋଟାଏ Corner Stone (ପ୍ରଧାନ ଭିତ୍ତିପ୍ରସ୍ତର) । ଇଷ୍ଟଭୃତି ହିସାବରେ ନିତ୍ୟଭୋଜ୍ୟ ବା ନୈବେଦ୍ୟ ଉତ୍ସର୍ଗ କରିବା ହିଁ ବିଧି । ତେବେ ତାହା ରଖିବା ଏବଂ ଏଇ ଜିନିଷ ହିଁ ମାସାନ୍ତରେ ଇଷ୍ଟ ସ୍ଥାନରେ ପହଂଞ୍ଚାଇ ଦେବାର ବାସ୍ତବ ଅସୁବିଧା ଅଛି । ତେଣୁ ଭୋଜ୍ୟ ଅନୁକଳ୍ପ ପଇସା ରଖିଲେ ଚଳିବ ।

ଇଷ୍ଟଭୃତି କଲାବେଳେ, ନିତ୍ୟ ଇଷ୍ଟଭୃତି, ଭୂତଭୋଜ୍ୟ ଓ ଭ୍ରାତୃଭୋଜ୍ୟ, ଯଦି ପୃଥକ-ପୃଥକ ଭାବରେ ତିନିଟି ଡବାରେ ବା କନାରେ ବାନ୍ଧି earmark (ଚିହ୍ନିତ) କରି ରଖ, ସେଥିରେ ମଧ କୌଣସି ଦୋଷ ନାହିଁ । ମାସସାରା ଯେତେ ଯେତେ ନିବେଦିତ ହେଲା, ତଦନୁଯାୟୀ ମାସ ଶେଷରେ ଦେବେ । ତେବେ ସ୍ମରଣ ରଖିବାକୁ ହେବ ଇଷ୍ଟ ଭରଣ ହିଁ ମୁଖ୍ୟ, ଏହାହିଁ ଗଣ୍ଡି, ଭୂତଭୋଜ୍ୟ ଓ ଭ୍ରାତୃଭୋଜ୍ୟ ଏହାର ହିଁ ଶାଖା । କେବଳ ଭୂତଭୋଜ୍ୟ ବା ଭ୍ରାତୃଭୋଜ୍ୟର କୌଣସି ଦାମ୍ ନାହିଁ ଯଦି ଜଣେ ଇଷ୍ଟଭୃତି ନ କରେ । ଇଷ୍ଟଭୃତିର ଆନୁସଙ୍ଗିକ ହିସାବରେ ହିଁ ଭୂତଭୋଜ୍ୟ ଓ ଭାତୃଭୋଜ୍ୟ । ଅବଶ୍ୟ ଇଷ୍ଟଭୃତିକୁ ପୂର୍ଣ୍ଣାଙ୍ଗ କରିବାପାଇଁ ଭୂତଭୋଜ୍ୟ ଓ ଭ୍ରାତୃଭୋଜ୍ୟ ଅବଶ୍ୟ ଦେୟ । ତିନିଟିକୁ ପୃଥକ ଭାବରେ ନୈବେଦ୍ୟ ଉତ୍ସର୍ଗ କରିବା ପ୍ରସଙ୍ଗରେ ହିଁ ମୁଁ ଏତେ କଥା କହୁଛି । ଅଲଗା ନିବେଦନ କରାଯାଇପାରେ

ବୋଲି କେହି ଯେପରି ମନେ ନ କରନ୍ତି ଯେ ଏସବୁ ସମାନ ମୂଲ୍ୟର । ଅତଏବ ଯେକୌଣସି ଗୋଟିଏ କଲେ ଚଳିବ । ଏହା କିନ୍ତୁ ନୁହେଁ । ଅଲଗା ହେଲେ ମଧ୍ୟ ଅଲଗା ନୁହେଁ । ସବୁଟା ମିଳି ଇଷ୍ଟଭୃତି ପୂର୍ଣ୍ଣାଙ୍ଗ ହୁଏ, ଏହାହିଁ ବକ୍ତବ୍ୟ ! ଆଉ ଭ୍ରାତୃଭୋଜ୍ୟ, ଭୂତଭୋଜ୍ୟ, ଇଷ୍ଟଭୃତି ଓ ଇଷ୍ଟପ୍ରୀତିକୁ ହିଁ ଲକ୍ଷ୍ୟକରି । ପ୍ରତ୍ୟେକ ୩୦ ଦିନର ଦକ୍ଷିଣା ଓ ସଂଗଠନୀ ସହ ଇଷ୍ଟଭୃତି ଦେବାହିଁ ବିଧି । ପ୍ରଥମେ ଇଷ୍ଟଭୃତି ଦେଇ ବା ପଠାଇ ତା ପରେ ଭ୍ରାତୃଭୋଜ୍ୟ ବା ଭୂତଭୋଜ୍ୟ ଦାନ କରିବା କଥା । ପୁଣି, କେହି ଯଦି ଭ୍ରାତୃଭୋଜ୍ୟ ଓ ଭୂତଭୋଜ୍ୟ ପ୍ରତିଦିନ ନ ରଖେ, ଏବଂ ମାସ ଶେଷରେ ନିବେଦିତ ଇଷ୍ଟାର୍ଘ୍ୟ ପୁରାପୁରି ଇଷ୍ଟସ୍ଥାନକୁ ପଠାଇ ଅଲଗା କରି ଏହା (ଭ୍ରାତୃଭୋଜ୍ୟ ଓ ଭୂତଭୋଜ୍ୟ) ଦିଏ, ତାହେଲେ ମଧ୍ୟ ଚଳିପାରେ । (୩୨)

ଇଷ୍ଟଭୃତି ପଠାଇବା ଦିନ ଦୁଇଜଣ ଇଷ୍ଟଭ୍ରାତାଙ୍କୁ ନିମନ୍ତ୍ରଣ କରି ଭ୍ରାତୃଭୋଜ୍ୟ ପ୍ରଦାନ କରିବାକୁ ହୁଏ । ଭ୍ରାତୃଭୋଜ୍ୟ ମଧ୍ୟ ଶ୍ରଦ୍ଧା ସହକାରେ ଗ୍ରହଣ କରାଯାଏ । ଇଷ୍ଟଭ୍ରାତାଙ୍କ ଅଭାବରେ ଦୁଇଜଣ ଗୁରୁଜନଙ୍କୁ ଏହି ଭୋଜ୍ୟ ଦିଆଯାଇପାରେ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଦେଖୁ -

"ଇଷ୍ଟଭୃତିର ଭ୍ରାତୃଭୋଜ୍ୟ
ଅବଜ୍ଞା କରି ଦିଏ ନା
ପାଦେ ଲକ୍ଷ୍ମୀ ସେଇତ ଠେଲେ
ନାରାୟଣେ ଚାହେଁନା ।"

## ଋତ୍ୱିକୀ

ପ୍ରତିମାସରେ ଇଷ୍ଟଭୃତି ସହିତ ଦକ୍ଷିଣା ଓ ସଂଗଠନୀ ଦିଆଯିବା ସଙ୍ଗେ ସଙ୍ଗେ ନିଜର ଦୀକ୍ଷାଦାତା ଋତ୍ୱିକଙ୍କର ପୋଷଣ ଓ ତୁଷ୍ଟି ନିମିତ୍ତ ଋତ୍ୱିକୀ ଅର୍ଘ୍ୟ ଇଷ୍ଟଙ୍କ ପାଖକୁ ପଠାଇବା ଅବଶ୍ୟ କର୍ତ୍ତବ୍ୟ । ଏହି ଋତ୍ୱିକୀ ଅର୍ଘ୍ୟ ଯେପରି ଇଷ୍ଟଭୃତି ଠାରୁ ବେଶୀ ନ ହୁଏ । ଋତ୍ୱିକୀ ଅର୍ଘ୍ୟ ତିନି,

ପାଞ୍ଚ ବା ସାତ ଟଙ୍କା ପଠାଯାଇଥାଏ । ଶ୍ରୀଶ୍ରୀଠାକୁର କହିଛନ୍ତି - "ଋତ୍ୱିକମାନଙ୍କର ପୋଷଣ ବିନିମୟରେ ଯଜମାନମାନେ ଯଦି ଋତ୍ୱିକମାନଙ୍କ ପାଇଁ ବାସ୍ତବରେ କିଛି ନକରନ୍ତି, ତେବେ ଏହି କର୍ତ୍ତବ୍ୟହୀନତାର ଛିଦ୍ର ଦେଇ ସେମାନଙ୍କ ଜୀବନର ଅନେକ ଉନ୍ନୟନୀ ସଂପଦ ବାହାରି ଯାଇପାରେ । ମଣିଷ ବଡ଼ ବା ଛୋଟ ହୁଏ ତା'ର ଗୁଣର ତାରତମ୍ୟାନୁସାରେ । କାହାରି ପାଖରୁ ସତ୍ତାପୋଷଣୀ ସେବା ପାଇବା ସତ୍ତ୍ୱେ ମଧ୍ୟ ତା'ପାଇଁ ଯଦି କିଛି କରାଯାଏନି, ବା କରିବାପାଇଁ ଚେଷ୍ଟା ନ ରୁହେ, ତେବେ ଏହି ନିଥର ଭାବ କାଳେ କାଳେ ଅଯୋଗ୍ୟତା ଓ ଅକୃତଜ୍ଞତା ସୃଷ୍ଟି କରିଥାଏ । ତେଣୁ ପ୍ରତ୍ୟେକଙ୍କର ଇଷ୍ଟଭୃତି ସହିତ ଋତ୍ୱିକୀ କରିବା ଉଚିତ୍ ନିଜର ମଙ୍ଗଳ ଦିଗକୁ ଚାହିଁ । ଯଜମାନମାନେ ଯଦି ଇଷ୍ଟଭୃତି ସହିତ ପ୍ରତିମାସରେ ଋତ୍ୱିକୀ ପଠାନ୍ତି ତା'ହେଲେ କାଳେ କାଳେ ଭଲ ଭଲ ଋତ୍ୱିକଙ୍କର ସଂଖ୍ୟା ବି ବଢ଼ିଯିବ । ଭଲ ଋତ୍ୱିକ୍ ଯେତେ ବଢ଼ିବେ ସମସ୍ତଙ୍କର ସେତେ ମଙ୍ଗଳ । ଋତ୍ୱିକମାନେ ହେଉଛନ୍ତି ଲୋକ ସ୍ୱାର୍ଥୀ ।"

ଶ୍ରୀଶ୍ରୀଠାକୁର ଋତ୍ୱିକ୍‌ମାନଙ୍କୁ ଲକ୍ଷ୍ୟ କରି କହିଛନ୍ତି - "ଋତ୍ୱିକୀ ହେଲା ଋତ୍ୱିକମାନଙ୍କର ଗୌରବଜନକ ଜୀବିକା । ଏହିଟି ବ୍ୟକ୍ତି ଓ ସମଷ୍ଟିର ମଙ୍ଗଳ ଆଣେ । ଏଠାରେ କୌଣସି ଦୁର୍ବଳତା ନାହିଁ । ଅହଂକାର ଓ ଅଭିମାନ ଜନିତ ଚଳଣି ମନୁଷ୍ୟକୁ ବିଧ୍ୱସ୍ତି ଆଡ଼କୁ ନେଇଯାଏ । ଅଶାନ୍ତି ଓ ଦ୍ୱନ୍ଦ୍ୱରେ ମନ ଜର୍ଜ୍ଜରିତ ହୋଇ ଉଠେ । କିନ୍ତୁ ଏଇ ଋତ୍ୱିକୀ ହେଲା ଋତ୍ୱିକମାନଙ୍କର ପବିତ୍ର ପ୍ରସାଦ । ଏହି ଋତ୍ୱିକୀ ଉପରେ କାହାରି କୌଣସି ଦାବୀ ରହିବ ନାହିଁ । ଯେପରି ଇଷ୍ଟଭୃତି କେହି ଦାବୀ କରନ୍ତିନି, ସେହିପରି ଏହି ଅର୍ଥ ବି ମୋତେ କେନ୍ଦ୍ର କରି ଦେଉଛନ୍ତି, ଏଥିରେ କାହାରି ବି ଦାବୀ ନାହିଁ, ତାହା ତୁମେ ନେଇପାର, ମୋତେ ବି ଦେଇପାର । ଋତ୍ୱିକୀ ମୋତେ offer କରୁଛନ୍ତି । ଋତ୍ୱିକ ଓ ତାଙ୍କ ପୁଅ ଝିଅଙ୍କର କୌଣସି ଦାବୀ ନାହିଁ । offer ମାନେ to bring to bear." "ଆମେ ଯଦି ଋତ୍ୱିକୀର ଉପରେ ଛିଡା ହେଉ ତେବେ ଭଲ ହୁଏ । ପିତାମାତା ସନ୍ତାନକୁ ମଣିଷ

କରିବା ସମୟରେ ଯେପରି ଅପର ପାଇଁ କରୁଛି ବୋଲି ମନେକରେନା, ଋତ୍ୱିକଙ୍କୁ ବି ସେଇଭଳି ଭରଣ କରିବା ଉଚିତ୍ ସମସ୍ତଙ୍କର ସ୍ୱେଚ୍ଛାରେ, ଆନନ୍ଦରେ । ଋତ୍ୱିକମାନଙ୍କର ପୁଣି ଲୋକପାଳୀ ହେବା ଉଚିତ୍ ।" (ତା ୧୭.୪.୧୯୫୧ ସଂଧ୍ୟା କର୍ମୀମାନଙ୍କ ଉଦ୍ଦେଶ୍ୟରେ ଶ୍ରୀଶ୍ରୀଠାକୁରଙ୍କ ଉକ୍ତି) ।

ଅତଏବ, 'ଋତ୍ୱିକୀ'ର ଗୁରୁତ୍ୱ ସହଜରେ ଅନୁମେୟ । ମନେ ରଖିବାକୁ ହେବ ଯେ ଇଷ୍ଟଭୃତି ସହିତ 'ଋତ୍ୱିକୀ' ଇଷ୍ଟସ୍ଥାନକୁ ପଠାଇବାକୁ ହେବ । ଏହା ପୃଥକ ବ୍ୟକ୍ତିଗତ ଭାବେ ଋତ୍ୱିକଙ୍କୁ ଦିଆଯିବ ନାହିଁ । କାରଣ, ଇଷ୍ଟଦେବତା ଶ୍ରୀଶ୍ରୀଠାକୁର ହିଁ ଋତ୍ୱିକ ।

## ଇଷ୍ଟଭୃତି କିପରି ପଠାଇବ ?

ଇଷ୍ଟଭୃତି ପ୍ରତିମାସରେ ଅର୍ଥାତ୍ ତ୍ରିଶଦିନର ଦିନ ହିଁ ଏକତ୍ରିତ କରି ଦକ୍ଷିଣା, ସଂଗଠନୀ ଓ ଋତ୍ୱିକୀ ସହ ଇଷ୍ଟଙ୍କ ସ୍ଥାନରେ ସ୍ୱହସ୍ତରେ ବା ସ୍ୱୟଂ ଡାକଯୋଗେ ପ୍ରେରଣ କରିବା ସମୀଚୀନ ଏବଂ ବିହିତ ଭାବେ ପ୍ରେରଣ କରିବା ପରେ ଅନ୍ନ-ଜଳ ଇତ୍ୟାଦି ଗ୍ରହଣ କରିବା ଉଚିତ୍ ।

ଡାକ ଯୋଗେ ମନିଅର୍ଡର ବା ବ୍ୟାଙ୍କ୍ଡ୍ରାଫ୍ଟ୍ ଯୋଗେ ପଠାଇ ହେବ ।

ପ୍ରଧାନ ଆଚାର୍ଯ୍ୟଙ୍କ ବିଶେଷ ନିର୍ଦ୍ଦେଶ ଅଛି ଯେ ନିକଟସ୍ଥ ସ୍ଥାୟୀ ସତ୍‌ସଙ୍ଗ ବିହାର ଓ ସତ୍‌ସଙ୍ଗ କେନ୍ଦ୍ର ଜରିଆରେ ପଠାଇ ହେବ । ଦାୟିତ୍ୱଶୀଳ କର୍ମୀଗଣ ଯେଉଁମାନେ ଅର୍ଘ୍ୟ ସଂଗ୍ରହ କରୁଛନ୍ତି କେବଳ ସେହିମାନଙ୍କୁ ହିଁ ଦେଇ, ପରେ ସେମାନଙ୍କଠାରୁ ଅର୍ଘ୍ୟ-ପ୍ରଶ୍ୱସ୍ତି ସଂଗ୍ରହ କରିବାକୁ ହେବ । ସତ୍‌ସଙ୍ଗକେନ୍ଦ୍ର, ସତ୍‌ସଙ୍ଗ ମନ୍ଦିର ବା ସତ୍‌ସଙ୍ଗ ବିହାର ବାହାରେ ଏହା ସଂଗ୍ରହ କରାଯିବା ଅବିଧି ଏବଂ କେନ୍ଦ୍ର ବା ବିହାରରେ ଏହି ଅର୍ଘ୍ୟ ସଂଗ୍ରହ ହେଲାପରେ ଗଚ୍ଛିତ ନରଖି ଉକ୍ତ ଦିନ ହିଁ ବ୍ୟାଙ୍କଡ୍ରାଫ୍ଟ୍ କରିବା ଉଚିତ୍ ।

(ଉର୍ଜ୍ଜନା-ନଭେମ୍ବର-୨୦୦୧) ସବୁବେଳେ ମନେ ରଖିବା ଦରକାର ଯେ ଇଷ୍ଟଭୃତି ଯିଏ କରୁଛନ୍ତି, ଠିକ୍ ଭାବେ ପଠାଇବା ଦାୟିତ୍ୱ ତାଙ୍କର । ଇଷ୍ଟଭୃତି ଯେପରି ବିହିତ ଭାବେ ଇଷ୍ଟସ୍ଥାନରେ ପହୁଁଞ୍ଚେ ତା'ର ଦାୟିତ୍ୱ ନିଜର । ଶ୍ରୀଶ୍ରୀଠାକୁରଙ୍କ ଶ୍ରୀମୁଖ ନିସୃତ ବାଣୀ ମଧ୍ୟରେ ଦେଖୁଁ :

"ଇଷ୍ଟଭୃତି ଇଷ୍ଟଙ୍କୁ ହିଁ ଦିଅ
କରନା ସେଥିରେ ବଞ୍ଚନା
ଅନ୍ୟଙ୍କୁ ତାହା ଦେଲେହିଁ ଜାଣିଥା
ଆସିବ ବିପାକ ଗଞ୍ଜଣା ।"[୩୩]

ଇଷ୍ଟଭୃତି ପଠାଇବା ଦିନ ଯଦି ରବିବାର ବା ଅନ୍ୟ କୌଣସି ଛୁଟି କାରଣରୁ ପୋଷ୍ଟଅଫିସ ବା ବ୍ୟାଙ୍କ୍ ବନ୍ଦ ଥାଏ ତେବେ ଶୁଦ୍ଧାଚାରରେ ଇଷ୍ଟଭୃତି ପୃଥକଭାବେ ରଖି ମନିଅର୍ଡର ଫର୍ମ ବା କମ୍ପ୍ୟୁଟରରେ ବ୍ୟବହୃତ ହେବାକୁ ଥିବା ଫର୍ମ ପୂରଣ କରି, ଶ୍ରୀଶ୍ରୀଠାକୁରଙ୍କୁ ପ୍ରଣାମ ପୂର୍ବକ ପରିଛନ୍ନ ସ୍ଥାନେ ଶୁଚି-ଶୁଦ୍ଧଭାବେ ରଖି, ପରଦିନ ଯଥାବିଧି ପଠାଇବାକୁ ହୁଏ । ଚେକ୍ ମାଧ୍ୟମରେ ନ ପଠାଇବା ଭଲ । ମନେ ରଖିବାକୁ ହେବ ଯେ ନିଖୁଣ ସାଂସ୍କୃତିକ ଶୁଚିତା ସହକାରେ ବିନା ସର୍ତ୍ତ ତଥା ବିନା କୈଫିୟତ ଓ ହିସାବ-ନିକାଶ ବିନା, ଇଷ୍ଟଙ୍କର ଯଦୃଚ୍ଛା ବ୍ୟବହାର ମାନସରେ ଶ୍ରଦ୍ଧା-ଉଚ୍ଛଳ ଆକୂତି ନେଇ ଇଷ୍ଟଭୃତି ମଙ୍ଗଳ-ଯଜ୍ଞ ଆଜୀବନ କରି ଚଳିବାକୁ ହେବ ।

୨୨୪ ତମ ସର୍ବଭାରତୀୟ ଋତ୍ୱିକ ସମ୍ମେଳନରେ ସତ୍‌ସଙ୍ଗ ସଂପାଦକଙ୍କ ବକ୍ତବ୍ୟ - "ଶୁଣାଯାଏ କୌଣସି କୌଣସି ଜାଗାର କୌଣସି କୌଣସି କର୍ମୀ ଇଷ୍ଟଭୃତି collection (ସଂଗ୍ରହ) କରି ଏଠାକୁ ନେଇ ଆସୁଛନ୍ତି, ବା ମନିଅର୍ଡର କରି ପଠାଉଛନ୍ତି । ଏଗୁଡିକ କିନ୍ତୁ ଠିକ୍ ନୁହେଁ । ପରମ ଦୟାଲଙ୍କର ଏପ୍ରକାର କୌଣସି ନିର୍ଦ୍ଦେଶ ନାହିଁ । ଯାହାର ଇଷ୍ଟଭୃତି ସେ ହିଁ ପଠାଇବେ । ତାଙ୍କୁ କୌଣସି କର୍ମୀ ସାହାଯ୍ୟ କରି ପାରନ୍ତି; କିନ୍ତୁ ପଠାଇବେ ସେ ନିଜେ ନିଜ ହାତରେ ।' (ଆଲୋଚନା ପତ୍ରିକା - ସେପ୍ଟେମ୍ବର - ୧୯୯୬) ।

ଇଷ୍ଟଭୃତି ସଂପର୍କରେ ଶ୍ରୀ ଶ୍ରୀ ଠାକୁର ଯେଉଁ ଆଶୀର୍ବାଣୀ ପ୍ରଦାନ କରିଛନ୍ତି, ସଂକ୍ଷେପରେ ଏହା ଭିତରେ ସବୁକିଛି ରହିଛି । କିପରି ଇଷ୍ଟଭୃତି କରିବ, କିପରି ପଠାଇବ, କରିଲେ କିପରି ଫଳ ପାଇବ ଇତ୍ୟାଦି ସୂତ୍ରାକାରରେ ରହିଛି -

"ଇଷ୍ଟଭୃତି
ଯେଉଁମାନେ ଆର୍ଯ୍ୟପନ୍ଥୀ ବା ଧର୍ମପନ୍ଥୀ
ପ୍ରତ୍ୟେକଙ୍କର ହିଁ ଅବଶ୍ୟ କରଣୀୟ,
ଆଉ, ସ୍ୱସ୍ତ୍ୟୟନୀବ୍ରତ ଯେଉଁମାନେ ଗ୍ରହଣ କରନ୍ତି,
ସେମାନଙ୍କ ପକ୍ଷେ ମଧ୍ୟ ତାହା
ଆଜୀବନ ଅବଶ୍ୟ ପାଳନୀୟ
ସମ୍ୟକ୍ ନୀତି-ବିଧି-ସହ;
ବିଶେଷ ସଦାଚାର ପରାୟଣ ହୋଇ
ସୁନିଷ୍ଠ ସନ୍ଦୀପନାରେ
ପ୍ରତ୍ୟୁଷରେ
ସାଂସାରିକ କର୍ମରେ
ନିୟୋଜିତ ହେବା ପୂର୍ବେ ହିଁ
ଏହି ଅର୍ଘ୍ୟ-ନିବେଦନ
ମଣିଷର ଜୀବନକୁ
ଉଚ୍ଛଳ କରି ତୋଳିଥାଏ -
ବୈଶିଷ୍ଟ୍ୟମାଫିକ୍ ପ୍ରବୃତ୍ତିଗୁଡିକର କ୍ରମ ବିନ୍ୟାସରେ
ଅନ୍ତର୍ନିହିତ ଗୁଣ ଓ ବୋଧଦୀପନାର
କ୍ରମ ବିନାୟନାରେ

ମଣିଷକୁ କୃତି-ତତ୍ପର ଅନୁବେଦନାରେ
ଉଦ୍ଦୀପ୍ତ କରେ;
ତେଣୁ, ଇଷ୍ଟଭୃତି ବା ସ୍ୱସ୍ତ୍ୟୟନୀ
ସୁନିଷ୍ଠ ଶ୍ରଦ୍ଧାଦୀପ୍ତ ଅନ୍ତରେ ନିତ୍ୟ ସ୍ୱହସ୍ତେ
ଇଷ୍ଟୋଦ୍ଦେଶ୍ୟେ ନିବେଦନ କରି -
ଇଷ୍ଟାର୍ଥ ପ୍ରୟୋଜନରେ
ତାଙ୍କରି ଯଥେଚ୍ଛ ବ୍ୟବହାର ପାଇଁ
ଯଥା ସମୟରେ ଇଷ୍ଟଙ୍କ ନିକଟକୁ ନିଜେ ହିଁ ପଠାଇ ଦେବା
ଅବଶ୍ୟ ପାଳନୀୟ ବିଧି;
ଅଶକ୍ତ ଅବସ୍ଥାରେ
ନିର୍ଭର ଯୋଗ୍ୟ ସପିଣ୍ଡ କାହାକୁ ଦେଇ ପଠାଯାଏ,
ତାହାମଧ୍ୟ ଯେଉଁଠାରେ ଅସମ୍ଭବ -
ସେପରି ସ୍ଥଳେ
ନିର୍ଭର ଯୋଗ୍ୟ ଇଷ୍ଟଭ୍ରାତା କାହାକୁ ଦେଇ
ପଠାଇବା ଚଳେ,
କିନ୍ତୁ ତା' ଯେପରି ଯଥା ସମୟରେ ପ୍ରେରିତ ଓ ଇଷ୍ଟଙ୍କ ନିକଟରେ
ବାସ୍ତବରେ ଉପସ୍ଥାପିତ ହୁଏ
ସେ-ବ୍ୟବସ୍ଥାର ଦାୟିତ୍ୱ କିନ୍ତୁ ତା'ର ନିଜରହିଁ;
ଏହାର ବ୍ୟତ୍ୟୟୀ ଅନୁଚଳନ
ଅନ୍ତରସ୍ଥ ଶ୍ରେୟ-ନିଷ୍ଠାକୁ ବ୍ୟତିକ୍ରମ ଦୁଷ୍ଟ କରେ
ଅନୁଶୀଳନକୁ ମଧ୍ୟ ସେହିପରି
କ୍ଷୁବ୍ଧ କରି ତୋଳେ;
ପୁଣି, ଏହି ଇଷ୍ଟଭୃତି ବା ସ୍ୱସ୍ତ୍ୟୟନୀ

ଯଥା ସମୟରେ ନ ପଠାଇଲେ
ବା ସାମର୍ଥ୍ୟ ଥିଲେ ମଧ୍ୟ ନିଜେ ନ ପଠାଇ
ସେଇ ଇଷ୍ଟାର୍ଘ୍ୟ
ସେଇପରି ଭାବରେ ଯେଉଁମାନେ ସଂଗ୍ରହ କରନ୍ତି
ବା ଯେଉଁମାନେ ଅନ୍ୟର ହାତରେ ଦିଅନ୍ତି -
ଉଭୟ ହିଁ ବ୍ୟତିକ୍ରମ ଦୁଷ୍ଟ ହୋଇପଡନ୍ତି;
ଆଗନ୍ତୁକ ଯେ କୌଣସି ପ୍ରକାର ବିପଦ-ଆପଦରେ
ଯେଉଁମାନେ ଏପରି କରନ୍ତି ନାହିଁ -
ସେମାନେ ଯେଉଁଠାରେ ନିର୍ଯ୍ୟାତିତ ହୋଇ ଥାଆନ୍ତି -
ସେପରି ସ୍ଥଳେ ସେଇ ସୁନିଷ୍ଠ ବ୍ରତାଚାରୀ ଯେଉଁମାନେ
ସେମାନେ ଦୁର୍ଭେଦ୍ୟ ସ୍ତମ୍ଭପରି ଠିଆ ହୋଇଥାନ୍ତି,
ଆଉ, ସେମାନଙ୍କର ଆପଦ-ଆବର୍ଜନା ଗୁଡିକ
ପବନର ହାଓ୍ୱାରେ କେଉଁଆଡ଼େ ଉଡିଯାଏ -
ତାହାର ଠିକଣା ନାହିଁ,
ତେଣୁ, ଏହି ବ୍ରତରେ କୌଣସି ବ୍ୟତିକ୍ରମ ସୃଷ୍ଟି କରିବାକୁ ଯାଅ ନାହିଁ,
ବିହିତ ଭାବେ ଯାହା କରଣୀୟ ତାହାକର;
କୃତି-ତତ୍ପର ଅନୁନୟନ ପ୍ରତିଟି କର୍ମକୁ
ଇଷ୍ଟାନୁଗ ଧର୍ମ ଚର୍ଯ୍ୟାରେ ସୁବିନାୟିତ କରି
ତୁମର ସ୍ୱସ୍ତିପ୍ରକାରକୁ ସୁରକ୍ଷିତ କରି ଚାଲୁଥିବ,
ଆପଦ, ବିପଦ, ବିପର୍ଯ୍ୟୟ, ଦୁଃଖକଷ୍ଟର କାରଣ ଯାହାକିଛି
ସେଗୁଡିକ ଘୂର୍ଣ୍ଣିବାତ୍ୟାର ପ୍ରଚଣ୍ଡ ଆବର୍ତ୍ତନ ପରି
କେଉଁ ଆଡ଼େ ଉଡାଇ ଦେଇ
ତୁମକୁ ସ୍ୱସ୍ତି-ସନ୍ଦୀପ୍ତ କରି ରଖିବ;

ଦୁନିଆର ସବୁ ମହାତ୍ମାମାନେ
ଏହିପରି କହି ଥାଆନ୍ତି;
ତେଣୁ, ସୁସନ୍ଦୀପ୍ତୀ ହୁଅ,
ସାଧୁ କର୍ମୀ ହୁଅ,
ତୁମର ସତ୍ତା ଓ କୃତି ଦୀପନା
ଧୃତିମଣ୍ଡିତ ହେଉ -
ଶୁଭ-ସନ୍ଦୀପନୀ ତତ୍ପରତାରେ,
ସେଇ ବ୍ରତଚର୍ଯ୍ୟାର ଭିତର ଦେଇ
ତୁମେ ବ୍ରତୀ-ବ୍ୟକ୍ତିତ୍ୱ ଲାଭକର,
ବ୍ରତାଚାରୀ ହୋଇଉଠ ।"[୩୪]

ଜନୈକ ଭାଇ ଠାକୁରଙ୍କୁ କହିଲେ, - "ମୁଁ ଦୈନିକ ଇଷ୍ଟଭୃତି କରେ ଠିକ୍, କିନ୍ତୁ ୩୦ ଦିନ ପୂର୍ଣ୍ଣ ହେବା ଦିନ ପଠା ହୁଏ ନା ।"

ଶ୍ରୀଶ୍ରୀଠାକୁର - "ତା' ହେଲେ ସେଇ ଜାଗାରେ ମୋର ଗଣ୍ଡଗୋଳ ଆସିବାର ପଥ ଖୋଲାରହେ । ଆଉ, ମୁଣ୍ଡରେ ବିଷୟ ଓ ବ୍ୟାପାର ଗୁଡିକର **adjustment** (ନିୟନ୍ତ୍ରଣ) ଠିକ୍‌ମତେ ହୁଏନା । ମୋର ବାପା ଦୂରରେ ବସିଅଛନ୍ତି । ମୁଁ ଯଦି ୩୦ ଦିନ ପୂର୍ଣ୍ଣ ହେବା ଦିନରେ ନ ପଠାଏ ତା'ହେଲେ ସେ ଯେ ନଖାଇ ରହିବେ, ଏଇରକମ ଚିନ୍ତାଟି କରିନେଲେ ହିଁ ହୁଏ ।"[୩୫]

"ଆଗେ ରାଜା-ମହାରାଜା ପର୍ଯ୍ୟନ୍ତ ଇଷ୍ଟାର୍ଘ୍ୟ ନିଜେ ମୁଣ୍ଡରେ ମୁଣ୍ଡାଇ ଗୁରୁଙ୍କ ପାଖକୁ ବହିନେଇ ଦେଉଥିଲେ, ବର୍ତ୍ତମାନ ଅନ୍ତତଃ ନିଜେ ପୋଷ୍ଟଅଫିସ୍ ପର୍ଯ୍ୟନ୍ତ ଯିବା ଭଲ ଅନୁକହେ । ଗୁରୁସେବା ଚାକରବାକର ଦେଇ କରିବା ନୁହେଁ । ନିଜ ହାତରେ କରିବାକୁ ହୁଏ ।"[୩୬]

ଶ୍ରୀଶ୍ରୀଠାକୁର କର୍ମୀମାନଙ୍କ ଉଦ୍ଦେଶ୍ୟରେ ଯତି ଆଶ୍ରମରେ କହିଲେ (ତା ୧୭.୦୪.୧୯୫୧ ସଂଧ୍ୟା) ଇଷ୍ଟଭୃତି ଠିକ୍ ଭାବରେ କରିବା ଦରକାର ।

ନିଜ ହାତରେ ଗୁରୁସେବା କରିବାକୁ ହେବ । ଯେଉଁମାନେ ହିଁ ବଡ଼ ହୁଅନ୍ତି ସେଇମାନେ ହିଁ ଏଇଟା କରନ୍ତି । ଅନ୍ୟକୁ ଦେଇ କରାଇଲେ ଶୈଥିଲ୍ୟ ଆସେ । ନିଜର ଇଷ୍ଟଭୃତି ଯଥାସମ୍ଭବ ନିଜେ ହିଁ ପୋଷ୍ଟଅଫିସକୁ ଯାଇ ପଠାଇବା ଭଲ । ଅଶକ୍ତ ହେଲା ଅନ୍ୟକଥା । ଭ୍ରାତୃଭୋଜ୍ୟ ଠିକ୍ ଭାବରେ ଦେବାର ପ୍ରଥା ଖେଳାଇ ଦେବା ଦରକାର । ଇଷ୍ଟଭୃତି କରିବା ସଙ୍ଗେ ସଙ୍ଗେ ପରିବେଶର ସେବାପାଇଁ ବି କିଛି ରଖିଦେବା ଭଲ । ତା' ଦେଇ ଅନେକ କିଛି ହୋଇପାରେ । ପିଲାମାନଙ୍କୁ ପିତୃଭୃତି ଓ ମାତୃଭୃତି ପାଳନରେ ଅଭ୍ୟସ୍ତ କରି ପାରିଲେ ଭଲ ହୁଏ ।"

ବର୍ତ୍ତମାନ ସମୟରେ ସତ୍‌ସଙ୍ଗର ପ୍ରଧାନଆଚାର୍ଯ୍ୟଦେବଙ୍କ ନିର୍ଦ୍ଦେଶକ୍ରମେ ସତ୍‌ସଙ୍ଗ ବିହାର, ସତ୍‌ସଙ୍ଗ କେନ୍ଦ୍ର ଓ ମନ୍ଦିର ମାନଙ୍କରେ ଇଷ୍ଟଭୃତି ବିହିତ ଭାବେ ସଂଗ୍ରହ କରାଯାଉଛି । ସେଠାରେ ମଧ୍ୟ ସ୍ୱୟଂ ବା ସପିଣ୍ଡ କାହା ଦ୍ୱାରା ଜମା ଦିଆଯାଇ ପାରିବ । ଅନେକେ ମଧ୍ୟ ବ୍ୟାଙ୍କ୍ ମାଧ୍ୟମରେ ଜମା ଦେଉଛନ୍ତି । ବ୍ୟକ୍ତି ନିଜେ ହିଁ ଏସବୁ ବିଷୟରେ ସଚେତନ ରହି ନିଜେ ଇଷ୍ଟସ୍ଥାନକୁ ପଠାଇବାର ବିହିତ ବ୍ୟବସ୍ଥା କରିବେ ।

## ଇଷ୍ଟଭୃତି ଅର୍ଘ୍ୟ କ୍ରମବର୍ଦ୍ଧନଶୀଳ କରିବା

ଇଷ୍ଟଭୃତି ଅର୍ଘ୍ୟର ପରିମାଣ ସମୟକ୍ରମେ ତଥା ନିଜର ସାମର୍ଥ୍ୟାନୁସାରେ ବଢ଼ାଇବା ଉଚିତ୍ । ଆମ ନିଜର ଓ ନିଜ ଆତ୍ମୀୟମାନଙ୍କର ଖର୍ଚ୍ଚ ଯେପରି ସମୟାନୁକ୍ରମେ ବଢ଼ି ବଢ଼ି ଚାଲିଛି, ଇଷ୍ଟାର୍ଘ୍ୟ ମଧ୍ୟ ବଢ଼ାଯିବା ବାଞ୍ଛନୀୟ । ସେଥିପାଇଁ ନିଜର ଯୋଗ୍ୟତା ଓ ଅର୍ଜ୍ଜନ ପଟୁତାକୁ ସକ୍ରିୟ କରିବା ଦରକାର 'ଯେଉଁମାନେ ସାମର୍ଥ୍ୟ ସତ୍ତ୍ୱେ ବି ଇଷ୍ଟଭୃତି ବଢ଼ାନ୍ତି ନାହିଁ, ସେମାନଙ୍କର କ'ଣ କ୍ଷତି ହୁଏନି ?' - ପ୍ରଶ୍ନର ଉତ୍ତରରେ ଶ୍ରୀଶ୍ରୀଠାକୁର କହିଛନ୍ତି - "କରୁ କରୁ ବଢ଼ାଇବାର ବୁଦ୍ଧି ଆସେ । କୁହାଯାଏ – 'habit is the

second nature.' (ଅଭ୍ୟାସ ଦ୍ୱିତୀୟ ସ୍ୱଭାବ) । ଜଣେ ଫକୀର ଯାଇଥିଲେ ଜଣକ ଘରକୁ ଭିକ୍ଷା କରିବାକୁ, କିଛି ହିଁ ଘରବାଲା ଦିଏନି, ବାରମ୍ବାର ମାଗି ମାଗି ଗୃହିଣୀ ବିରକ୍ତ ହୋଇ ଶେଷରେ ଏକ ମୁଠା ପାଉଁଶ ଦେଲା । ତାହାପାଇ ଫକୀର କହିଲେ - 'ଏହା ବି ଭଲ, ହାତ ଖୋଲୁ' ।[୩୭]

ଦୁଲାଲ ଭାଇ (ମଜୁମଦାର) କହିଲେ, "ଇଷ୍ଟଭୃତି ଯେତେ ବଢ଼ାଯାଏ ସେତେ ଭଲ ।" ଶ୍ରୀଶ୍ରୀବଡ଼ଦା' ଉତ୍ତରରେ କହିଲେ - "ହଁ ଠିକ୍ ସେଇଆ ।"[୩୮]

## ଇଷ୍ଟଭୃତିରେ ବ୍ୟକ୍ତିତ୍ୱର ପରୀକ୍ଷା

ଇଷ୍ଟଭୃତି କରିବା, ନ କରିବା ବା କିଛିଦିନ କରି ଛାଡ଼ିଦେବା ଇତ୍ୟାଦିରୁ ମଣିଷକୁ ଚିହ୍ନା ଯାଇଥାଏ । ଶ୍ରୀଶ୍ରୀଠାକୁରଙ୍କ ନିମ୍ନୋକ୍ତ ବାଣୀ ଭିତର ଦେଇ ଆମେ ସହଜରେ ବୁଝିପାରିବା ଯେ କିଏ ଦୋଷପ୍ରତୁଳ, କିଏ ଗୁଣପ୍ରତୁଳ ବା କିଏ ଅବ୍ୟବସ୍ଥ ମଣିଷ । ଆମେ ନିଜେ ମଧ୍ୟ କିପରି ଲୋକ !

"ଯେଉଁମାନେ ପବିତ୍ର ଆଗ୍ରହ ସହିତ / ନିଖୁଣ ଆବେଗ ନେଇ / ଦୈନନ୍ଦିନ ଇଷ୍ଟଭୃତି, ଶ୍ରେୟଭରଣ / ବା ପୂତଅର୍ଘ୍ୟ ନିବେଦନ କରନ୍ତି - / ନିରନ୍ତର ସମ୍ବେଗରେ, ସେମାନଙ୍କ ମଧ୍ୟରେ କେହି ଯଦି / ବାହ୍ୟତଃ ଖରାପ ବି ବିବେଚିତ ହୁଅନ୍ତି - / ବୁଝିବାକୁ ହେବ, ସେମାନଙ୍କ ଶତ ପ୍ରଚେଷ୍ଟା ଆବେଗମୟୀ, / ଅନ୍ତରରେ ସେମାନେ ସତ୍-ଲୋକ ହିଁ, / ପୁଣି, ଯେଉଁମାନେ ଇଷ୍ଟଭୃତି କରନ୍ତି / କିନ୍ତୁ ଟିକିଏ ଅସୁବିଧା ହେଲେ ହେଁ ଛାଡ଼ି ଦିଅନ୍ତି / ପୁଣି ଧରନ୍ତି, ପୁଣି କରନ୍ତି, / ସେମାନେ ସାଧାରଣତଃ ଅବ୍ୟବସ୍ଥ, / ବ୍ୟକ୍ତିତ୍ୱ ବି ସେମାନଙ୍କର ଦୋଦୁଲ୍ୟମାନ, / କିନ୍ତୁ ଯେଉଁମାନେ ବୁଝନ୍ତି ଆଗ୍ରହଶୀଳ ହୋଇ / ଇଷ୍ଟଭୃତି ବା ଶ୍ରେୟଭରଣର ସିଦ୍ଧାନ୍ତ ଗ୍ରହଣ କରି ମଧ୍ୟ / ତାହା କରନ୍ତି ନାହିଁ / କୁହନ୍ତି, 'ନ କରି ତ ଭଲ ହିଁ ଅଛି / କରିବି ବା କାହିଁକି ? /

ସେମାନେ ଯେତେ ହିଁ ଚମକାଇବା ମଣିଷ ହୁଅନ୍ତୁ ନା କାହିଁକି / ପ୍ରବୃତ୍ତି ହିଁ ସେମାନଙ୍କର ପ୍ରଭୁ, / ଅସତ୍ ଦୀପନାରେ ଅଭିଭୂତ ସେମାନେ, / ପ୍ରବୃତ୍ତି - ନନ୍ଦନାହିଁ ଭଲଲାଗେ ସେମାନଙ୍କର, / ଲୋକ ହିସାବରେ ବି ସେମାନେ ଶୁଭପ୍ରୟାସୀ ନୁହଁନ୍ତି, / ପୁଣି, ସୁସିଦ୍ଧାନ୍ତ ଯେଉଁମାନଙ୍କର ଅଟୁଟ ହୋଇ ଠିଆ ହୁଏ, / ଯେପରି ହେଉ / ବ୍ୟତିକ୍ରମ ଆଣିପାରେନା କେହି ବା କିଛି, / ଜୀବନ-ଦଣ୍ଡ ସେମାନଙ୍କର ଶକ୍ତ, / ସେମାନଙ୍କର ଅବଲମ୍ବନ ମଧ୍ୟ ଦୃଢ଼ / ନାନା ଝିନ୍‌ଝଟ୍ ମଧ୍ୟରେ ବି ଶୁଭ / ଅଦୂରରେ ହିଁ ସେମାନଙ୍କ ପାଇଁ ଅପେକ୍ଷା କରେ, / କିଏ ଦୋଷପ୍ରତୁଳ, କିଏ ଗୁଣପ୍ରତୁଳ, କିଏ ଅବ୍ୟବସ୍ଥ - / ତାହାର ତୁଟ୍‌କା ପରଖ ହିଁ ଏହିଠାରେ ।”[୩୯]

ଇଷ୍ଟଭୃତି ନିବେଦନରେ ସାମାନ୍ୟତମ ଅବହେଳା ମଧ୍ୟ ବ୍ୟକ୍ତିତ୍ୱର ବିକାଶରେ ଅନ୍ତରାୟ ଏବଂ ସାର୍ଥକତାରେ ମନ୍ଥରତା ସୃଷ୍ଟି କରିଥାଏ । ଭ୍ରାତୃଭୋଜ୍ୟ ଓ ଭୂତଭୋଜ୍ୟକୁ ଇଷ୍ଟଭୃତିର ପୂଜା ଉପକରଣ ଭାବି ଯେଉଁମାନେ ନିବେଦନ କରନ୍ତି ନାହିଁ, ଇଷ୍ଟଭୃତିର ଆୟବ୍ୟୟ ସଂପର୍କରେ ଯେଉଁମାନଙ୍କର ଅନ୍ତରରେ ହେଉ ବା ବାହାରେ ହେଉ ନାନା ପ୍ରଶ୍ନ ଉଠିଥାଏ, ସେମାନଙ୍କ ଜୀବନରେ ତାହା ସମ୍ବର୍ଦ୍ଧନା ଆଣିପାରେନା ଓ ସେମାନଙ୍କ ଇଷ୍ଟଭୃତି ମଧ୍ୟ ସତ୍ତାର ପ୍ରଶ୍ୱସ୍ତିକର ହୋଇଉଠେନା । ଶ୍ରୀଶ୍ରୀଠାକୁରଙ୍କର ନିମ୍ନଲିଖିତ ବାଣୀରୁ ଏସବୁର ମର୍ମାର୍ଥ ଆମ ପାଖରେ ସୁସ୍ପଷ୍ଟ ହୋଇପାରିବ । “ଇଷ୍ଟଭୃତିରେ ଯେଉଁମାନଙ୍କର ନିଷ୍ଠା ଶିଥିଳ,/ ଯେଉଁମାନଙ୍କର ଇଷ୍ଟଭୃତି ବ୍ୟତ୍ୟୟୀ /, ବା ବିପର୍ଯ୍ୟୟୀକ୍ରମରେ ଚଳତ୍‌ଶୀଳ, / ଇଷ୍ଟଭୃତି ଜୀବନ - ଯଜ୍ଞର / ପ୍ରଧାନ ଆହୂତି ବୋଲି / ଯେଉଁମାନେ ଗ୍ରହଣ କରି ନାହାନ୍ତି, / ବା ମୁହଁରେ କହିଲେ ବି / କାର୍ଯ୍ୟରେ ସେଥିରେ ତାଚ୍ଛଲ୍ୟ ହିଁ କରିଥାଆନ୍ତି, / ଇଷ୍ଟଭୃତି ସମ୍ବନ୍ଧରେ / ତା’ର ଆୟ-ବ୍ୟୟ ସମ୍ବନ୍ଧରେ / ଯେଉଁମାନଙ୍କ ଅନ୍ତରରେ ହିଁ ହେଉ - / ଆଉ ବାହାରରେ ହିଁ ହେଉ - / କୈଫିୟତର ଅବତାରଣା ହୁଏ, /ଭ୍ରାତୃଭୋଜ୍ୟ, ଭୂତଭୋଜ୍ୟକୁ / ଯେଉଁମାନେ ଇଷ୍ଟଭୃତିର ପୂଜା ଉପକରଣ କରି / ନିବେଦନ କରନ୍ତି ନାହିଁ, / ଇଷ୍ଟଭୃତି ଇଷ୍ଟଙ୍କଠାରେ

ନିବେଦନ କରି / ଆତ୍ମପ୍ରସାଦର ବଦଳରେ / ଯେଉଁମାନେ ଅବଶୋଷ ହିଁ କରିଥାନ୍ତି, / ଏଇ ପ୍ରକାରର ଯେଉଁମାନେ - ସେମାନଙ୍କ ଇଷ୍ଟଭୃତି / ସତ୍ତାର ପ୍ରଶ୍ୱସ୍ତିକର ହୋଇଉଠିପାରେନା, / ଯଦିଓ ଏପରି ସ୍ଥଳରେ ବି / ଇଷ୍ଟଭୃତି କରିବା ମନ୍ଦର ଭଲ, / ଜୀବନକୁ ତା' / କିଛିଟା ଆଗେଇ ଦିଏ ଯଦିଓ, / ତଥାପି ଏପ୍ରକାର ଇଷ୍ଟଭୃତି / ଇଷ୍ଟଙ୍କ ଠାରେ ସାର୍ଥକ ହୋଇଉଠେନା, / ସେଇ ଭୃତି କଳଙ୍କ-ମର୍ଦ୍ଦିତ ବି ହୋଇଉଠେ, / ଆଉ, ତା'ର ନିବେଦନ ବି / ପ୍ରତିଷ୍ଠା ଲାଭ କରେନା, / ତେଣୁ, ତା'ର ସାର୍ଥକତା ଅତି ମନ୍ଥର, / ବ୍ୟତ୍ୟୟୀ ଓ ବିଭ୍ରାନ୍ତିର କବଳ-କଲୁଷିତ; / ଇଷ୍ଟ କ'ଣ ତାହା ଗ୍ରହଣ କରନ୍ତି ? / ସେ ଉତ୍ସର୍ଗ କ'ଣ ଜୀବନରେ / ସମ୍ବର୍ଦ୍ଧନୀ ଉତ୍ସର୍ଜ୍ଜନା ସୃଷ୍ଟି କରିପାରେ ? / - ତାହା କେତେବେଳେ ବି ନୁହେଁ, / ସେଇ ଦ୍ୱିଧାଦୁଷ୍ଟ ଉତ୍ସର୍ଗ / ତାଙ୍କ ପ୍ରଶ୍ୱସ୍ତିର ଅର୍ଘ୍ୟ ହୋଇଉଠେ ନା, ବରଂ ହୁଏ ଅସ୍ୱସ୍ତିର ସଜ୍ଜା ।"୪୦

ଇଷ୍ଟଭୃତି ଯେ କେତେ ଭାବରେ ଜୀବନର ବିକାଶରେ ସହାୟକ ଓ ବ୍ୟକ୍ତିତ୍ୱ ଗଠନର ନିୟାମକ - ତାହା କେବଳ ଯିଏ କରନ୍ତି ସିଏ ହିଁ ଅନୁଭବ କରିପାରିବେ । କେବଳ ତାତ୍ତ୍ୱିକ ଅଳସ ଆଲୋଚନା ନୁହେଁ, ବରଂ କରିବା ଭିତରଦେଇ ପ୍ରକୃତ ରହସ୍ୟ ଉଦ୍‌ଘାଟିତ ହୋଇଥାଏ ।

ଆଦର୍ଶପ୍ରାଣ ବ୍ୟକ୍ତି ନିଷ୍ଠାପୂତ ଭାବେ ଇଷ୍ଟଭୃତି ପରାୟଣ ହୋଇ ଚଳୁ ଚଳୁ ତା'ର ଫଳ (effect) ମଧ୍ୟ ଜୀବନରେ ଉପଲବ୍ଧି କରିଥାଏ । କିନ୍ତୁ ଇଷ୍ଟଙ୍କ ନୀତି ନିୟମରେ ନଚାଲିଲେ ଫଳ କିପରି ମିଳୁଛି, ଜାଣି ପାରନ୍ତିନି, କାମରେ ମଧ୍ୟ ଲଗାଇ ପାରନ୍ତିନି । କାରଣ ବ୍ୟକ୍ତିତ୍ୱ ସେଠାରେ ଶ୍ଳଥ ଓ ଆଳସ୍ୟରେ ଶୈଥିଲ୍ୟ । ଶ୍ରୀଶ୍ରୀଠାକୁର କହିଛନ୍ତି - "ଯେଉଁମାନଙ୍କର କୌଣସି Principle (ଆଦର୍ଶ) ନାହିଁ - ସେମାନେ ବୁଝିପାରନ୍ତି ନାହିଁ, effect (ଫଳ)ଟା କାମରେ ଲଗାଇ ପାରନ୍ତି ନାହିଁ, ସେମାନଙ୍କର experience (ଅଭିଜ୍ଞତା) ହୁଏ ନାହିଁ । କାରଣ, ପ୍ରବୃତ୍ତି ସେମାନଙ୍କ ନାକରେ ଦଉଡ଼ି ଦେଇ ଯେତେବେଳେ ଯେଉଁ ଭାବରେ ଚଳାଏ, ସେମାନେ ସେଇପରି

ଚାଲିବାକୁ ବାଧ ହୁଅନ୍ତି । ବିଚାର ବିଶ୍ଳେଷଣ କରି ସତ୍ତାପୋଷଣୀ ହେଲାପରି ଚଳିପାରନ୍ତି ନାହିଁ ।" - (ଆ.ପ୍ର.୧୨) । ଶ୍ରୀଶ୍ରୀଠାକୁର ଥରେ (ତା.୨୧.୮.୧୯୪୦) ଜଣେ ଭାଇ (ଯିଏ କାମଧନ୍ଦା ନପାଇ ବେକାର)ଙ୍କୁ କହିଥିଲେ, - 'ମାସେ ନିଜେ ଉପାୟ କରି ଇଷ୍ଟଭୃତି କର । ତା'ପରେ ଠିକ୍ ରାସ୍ତା ପାଇବୁ ।' ଅର୍ଥାତ୍, ଇଷ୍ଟଭୃତି କରିବା ଭିତରେ ନିଜର ଦକ୍ଷତା, କର୍ମକୁଶଳତା ତଥା ବ୍ୟକ୍ତିତ୍ୱର ବିକାଶ ଘଟେ । ଇଷ୍ଟଭରଣ ଯାହାର ମୁଣ୍ଡରେ ଜ୍ୱଳଜ୍ୱଳ କରୁଥାଏ, ତା'ର ପ୍ରବୃତ୍ତି ଗୁଡିକ ଧୀରେ ଧୀରେ ସୁବିନ୍ୟସ୍ତ ହୋଇଉଠେ । ସେ କଳ୍ପନା ବିଳାସୀ ହୁଏ ନାହିଁ, ତା'ର ଚିନ୍ତା ଓ କର୍ମ ଭିତରେ ସଙ୍ଗତି ରୁହେ । ଚରିତ୍ରବାନ୍ ସୁ-ବ୍ୟକ୍ତିତ୍ୱ ସଂପନ୍ନ ବ୍ୟକ୍ତିରେ ତା'ର ଜୀବନବିଭା ବିଭବାନ୍ୱିତ ହୁଏ ।

## ଇଷ୍ଟଭୃତି : ଭାବ ସମୁଦ୍ରରେ ପ୍ରବାଳ-ଦ୍ୱୀପସ୍ୱରୂପ

"ତୁମର ଜୀବନ ସମୁଦ୍ରରେ
ବା ଏହି ହେବାର ସମୁଦ୍ରରେ
ଇଷ୍ଟଭୃତି ପ୍ରବାଳ-ଦ୍ୱୀପସ୍ୱରୂପ -
ଯାହାକୁ ଭିତ୍ତି କରି
ସପାରିପାର୍ଶ୍ୱିକ ତୁମର ଜୀବନ-ଜଗତକୁ
ଏପରିଭାବେ ବିନାୟିତ କରିପାର,
ଯେପରି ସେଇ ପ୍ରବାଳ-ଦ୍ୱୀପ
ପ୍ରକୃଷ୍ଟ ବ୍ୟାପ୍ତିରେ
ବିରାଟ ହୋଇ ଉଠିପାରେ -
ଇଷ୍ଟାନୁଗ ଅନୁଚଳନ ତତ୍ପର ହୋଇ,
ତଦନୁଗ ଆତ୍ମବିନାୟନା ନେଇ;

ଆଉ, ଯେତେ ହିଁ ଝମେଲା ଆସୁ
ଝଞ୍ଜଟର ଝାପ୍‌ଟା
ଯେଉଁ ଭଳି ପ୍ରବାହିତ ହେଉ
ତୁମ ଉପର ଦେଇ,
ଆଗନ୍ତୁକ ପ୍ରବାହ ନେଇ, -
ଦେଖିବ -
ସେଇ ସକ୍ରିୟ ବାସ୍ତବ
ଅର୍ଘ୍ୟ-ଅନୁଚର୍ଯ୍ୟାର ଭିତର ଦେଇ
ତୁମେ ଏପରି ଭାବେ
ସ୍ତମ୍ଭ ଭଳି ଠିଆ ହୋଇପାରିବ,
ଯେପରି ସେଗୁଡିକ
କିଛି ହିଁ କରି ପାରିବନି ତୁମର,
ପ୍ରତିପଦେ, ନିରାକରଣରେ
ନିରୋଧ ଓ ନିୟନ୍ତ୍ରଣରେ
ବରଂ ସେଗୁଡିକୁ ବିନାୟିତ କରି
ଶୁଭପ୍ରସୂ ହିଁ କରି ତୋଳି ପାରିବ;
ଆଉ, ଦେଖିବ ଯେଉଁମାନେ ତାହା କରନ୍ତିନି -
ନିଖୁଁଣ ଭାବେ
ଶ୍ରଦ୍ଧା-ଉତ୍ସାରଣୀ
ସାଂସ୍କୃତିକ ଶୁଚିତା ନେଇ, -
ସେମାନେ ହୁଏତ ଝଡ଼ର କୁଟା ଭଳି
କେଉଁଠି ବିକ୍ଷିପ୍ତ ହୋଇ
ବିଧ୍ୱସ୍ତିରେ ନାନାବସ୍ଥାପ୍ରାପ୍ତ
ବା ଅବସାନ ହୋଇ ଚାଲିବେ
ତା'ର ଇୟତ୍ତାହିଁ ନାହିଁ;

ତେଣୁ କୁହେ,
ଦୃଢ଼ଭାବେ ହିଁ କୁହେ -
ଯା' ହିଁ କର, ଆଉ ତା' ହିଁ କର
ନିଖୁଣ ସାଂସ୍କୃତିକ ଶୁଚିତା ନେଇ
ବିନା ସର୍ତ୍ତରେ,
ବିନା କୈଫିୟତରେ,
ବିନା ହିସାବ-ନିକାଶରେ
ଶ୍ରଦ୍ଧୋଚ୍ଛଳ ସ୍ୱତଃସ୍ୱେଚ୍ଛ ଆକୂତି ନେଇ
ଅନ୍ତର-ଉତ୍ସର୍ଜ୍ଜନାରେ
ସେଇ ଇଷ୍ଟଭୃତି
ପ୍ରତ୍ୟହ ନିର୍ବାହ କରି ଚାଲ -
ସ୍ୱସ୍ତିର ଶାନ୍ତିଜଳ
କ୍ଷେପଣ କରି କରି
ସେଇଟା ତୁମର ଦୈନନ୍ଦିନ ମଙ୍ଗଳ ଯଜ୍ଞ;
ଠିକ୍ ଜାଣ -
ଯେଉଁମାନେ ସେଥିରୁ ତୁମକୁ
ନିବୃତ୍ତ କରନ୍ତି,
ସେମାନେ ଯେଉଁଭଳି ହିଁ ଶ୍ରଦ୍ଧାର ପାତ୍ର
ହୁଅନ୍ତୁ ନା କାହିଁକି -
ଅଜ୍ଞତାବଶତଃ ସେମାନେ
ଶତ୍ରୁତା ହିଁ କରିଥା'ନ୍ତି,
ବଜ୍ରଭଳି ଭୟାଲ୍ ସେମାନେ
ତୁମ ଜୀବନରେ ।"[୪୧]

ସୁତରାଂ ମହାସମୁଦ୍ରରେ ପ୍ରବାଳ-ଦ୍ୱୀପ ଯେପରି ବିପଦ-ଆପଦରେ ଆଶ୍ରୟସ୍ଥଳ ହୋଇଥାଏ, 'ଇଷ୍ଟଭୃତି' ସେହିପରି ଜୀବନ ସମୁଦ୍ରରେ ରକ୍ଷାର ଆଶ୍ରୟସ୍ଥଳ । ଯେତେ ଆପଣାର ଯିଏ ହେଉନା କାହିକି, ଇଷ୍ଟଭୃତିରୁ ବିରତ କରିବେ ଯିଏ, ସେ ଜୀବନର ଆଶ୍ରୟ-ସ୍ଥଳୀକୁ ନଷ୍ଟ କରି ଦେଉଛନ୍ତି ବୋଲି ଜାଣିବାକୁ ହେବ । ଶ୍ରୀଶ୍ରୀଠାକୁରଙ୍କ ଉପରୋକ୍ତ ବାଣୀଟିର ପ୍ରତ୍ୟେକ ପଂକ୍ତିକୁ ବିଶ୍ଳେଷଣ ସହକାରେ ମନେ ରଖିବାକୁ ହେବ ।

## ଇଷ୍ଟଭୃତି ଓ ଅନାସକ୍ତି

ମଣିଷ ଜୀବନରେ ଯେତେ ଦୁଃଖ ଆସେ ତା'ର ମୂଳରେ ଅଛି କାମନା-ବାସନା ଓ ଆସକ୍ତି । ପ୍ରବୃତ୍ତି-ମୁଖୀନତାରୁ ହିଁ ଏହାର ସୃଷ୍ଟି । ସବୁକର୍ମ ଭିତରେ ଅନାସକ୍ତ ଭାବ ରହିଲେ ଦୁଃଖ-ବିପଦ ମଣିଷକୁ କାବୁ କରି ପାରେ ନାହିଁ । ଆସକ୍ତି ରହିବ, କିଂତୁ ଇଷ୍ଟଙ୍କ ଉପରେ । ଇଷ୍ଟସେବା ଓ ଇଷ୍ଟ ପ୍ରତିଷ୍ଠାରେ ଜୀବନର ସାର୍ଥକତା । ନିଜର ସଞ୍ଚୟ ନେଇ ଆସକ୍ତ, ଆବଦ୍ଧ, ଭାରାକ୍ରାନ୍ତ ଓ ବିକାରଗ୍ରସ୍ତ ହୋଇ ଆମେ ନିଜେ ନିଜର କି ଯେ କ୍ଷତି କରୁ - ଜାଣିପାରୁନା । ସଂକୀର୍ଣ୍ଣ ବଦ୍ଧ ଜଳାଶୟ ଯେପରି ଆସ୍ତେ ଆସ୍ତେ ଶୁଖିଯାଏ - ବିଷାକ୍ତ ହୁଏ, ସେହିପରି ନିଜର କ୍ଷୁଦ୍ର ସ୍ୱାର୍ଥଚିନ୍ତା ଆମକୁ ବୃହତ୍ତର ଜୀବନ ଆଡକୁ ଧାବମାନ କରାଏ ନାହିଁ । କିନ୍ତୁ ପ୍ରତ୍ୟାଶାଶୂନ୍ୟ ହୋଇ ଇଷ୍ଟଙ୍କ ସେବାରେ ଯାହା ବିନିଯୋଗ କରୁ, ଉତ୍ସର୍ଗ କରୁ - ତାହାହିଁ ଜୀବନ-ବୃଦ୍ଧି ପଥରେ ସହାୟକ ହୁଏ । ଇଷ୍ଟଙ୍କୁ ଦେଇ ସାର୍ଥକ ହେବାର ବ୍ୟାକୁଳତା ଆମକୁ ମୋହ-ମୁକ୍ତ କରାଏ । ବିଶାଳ ତଥା ବିରାଟ ହୃଦୟର ଅଧିକାରୀ ହୋଇଉଠୁ । ଜୀବନର ସମସ୍ତ ସଂପଦ ଯେତେବେଳେ ଇଷ୍ଟଙ୍କ ଶ୍ରୀଚରଣରେ ନିବେଦିତ ହୁଏ, ସେତେବେଳେ ଜୀବନ ସାଧନାରାଜ୍ୟର ଚରମରେ ପହଁଞ୍ଚେ, - ବାସ୍ତବ ସମର୍ପଣଯୋଗ ହୁଏ । ଅତଏବ, ଇଷ୍ଟଭୃତି

ନିଷ୍ଠାର ସହିତ କରୁ କରୁ ଏହା ସମ୍ଭବ ହୁଏ । ପ୍ରଥମେ ପ୍ରଥମେ ଅଳ୍ପ ଦେଇ ଇଷ୍ଟଭୃତି କରୁ, କିଂତୁ ଆସ୍ତେ ଆସ୍ତେ ବଢ଼ି ବଢ଼ି ଚାଲେ, ଦିନ ଏପରି ଆସେ ଯେଉଁଦିନ ସବୁକିଛି ଇଷ୍ଟଙ୍କର ଓ ଇଷ୍ଟଙ୍କ ପାଇଁ ହୋଇଯାଏ ।

ଏହି ପରିପ୍ରେକ୍ଷୀରେ 'ଇଷ୍ଟ-ପ୍ରସଙ୍ଗେ'ରେ ଶ୍ରୀଶ୍ରୀବଡ଼ଦା' ଯେଉଁ କାହାଣୀଟି ବ୍ୟକ୍ତ କରିଥିଲେ, ସେଇଟି ନିମ୍ନରେ ଦିଆଗଲା ।

- ଶଙ୍କରଦେବଙ୍କର ଜଣେ ଭକ୍ତ ଥିଲେ । ଏହି ଭକ୍ତଙ୍କୁ ସମସ୍ତେ କୃପଣ ବୋଲି ଜାଣନ୍ତି । ଶଙ୍କର ଦେବ ଥରେ ତୀର୍ଥ ଭ୍ରମଣରେ ଯିବେ, ଟଙ୍କା ପଇସା ଦରକାର । ଠିକ୍ କରିଲେ ଏହି ଭକ୍ତ ପାଖରୁ ହିଁ ଚାହିଁବେ... । ଶଙ୍କର ଦେବ ଆସିବା କ୍ଷଣି ସେ (ଭକ୍ତ)ତ ଠିକ୍ କରିପାରୁନି ପ୍ରଭୁଙ୍କୁ କେଉଁଠି ବସାଇବ, କ'ଣ ଦେଇ ତାଙ୍କୁ ଭକ୍ତି ଶ୍ରଦ୍ଧା ନିବେଦନ କରିବ । କୌଣସି ପ୍ରକାରେ ତା'ର କୁଡିଆ ଘରଟିରେ ବସିବାକୁ ଦେଇ ସେ ପ୍ରଭୁଙ୍କର କୁଶଳାଦି ଜିଜ୍ଞାସା କରିଲା । ତା'ପରେ ଶଙ୍କର ଦେବ ତାଙ୍କର ଉଦ୍ଦେଶ୍ୟ ଖୋଲି କହିଲେ । ସେ ତ ଅବାକ୍ - ଏଇ ସାମାନ୍ୟ ବ୍ୟାପାର ଲାଗି ପ୍ରଭୁ ସ୍ୱୟଂ ତା'ର କୁଟୀରରେ ଚରଣଧୂଳି ଦେବେ ତା' ସେ ଭାବିପାରିନି । ତେଣୁ ବିଳମ୍ବ ନକରି ସେ ପ୍ରଭୁଙ୍କୁ କହିଲା - ଆପଣ ଦୟା କରି ବସନ୍ତୁ । ମୁଁ ଏକ୍ଷଣି ଫେରି ଆସୁଛି । କିଛି ସମୟ ପରେ ସେ ତା'ର ବିଷୟ ସମ୍ପତ୍ତି ସବୁ ବନ୍ଧକ ଦେଇ ଟଙ୍କା ପୁଟୁଳିଟି ନେଇ ଗୁରୁଙ୍କ ନିକଟରେ ଉପସ୍ଥିତ ହେଲା । ଗୁରୁ ଚିନ୍ତା କରି ବି ପାରିନାହାଁନ୍ତି ଯେ ସବୁ କିଛି ବନ୍ଧକ ଦେଇ ଶିଷ୍ୟ ଏଭଳି ତାଙ୍କ ପାଖରେ ତା'ର ଯଥା ସର୍ବସ୍ୱ ନିବେଦନ କରିବ ! ତେଣୁ ଜିଜ୍ଞାସା କରିଲେ - କି ବ୍ୟାପାର ? ଆନନ୍ଦବିଗଳିତାଶ୍ରୁ ଭକ୍ତ ଉତ୍ତର ଦେଲା - ପ୍ରଭୁ, ଆପଣଙ୍କର ଜିନିଷ ଆପଣଙ୍କୁ ହିଁ ଦେଇଛି ।

ଏହାହିଁ ହେଲା ଅସଲ ଭକ୍ତି ।

ଏହାହିଁ ସମର୍ପଣ ଯୋଗ । ବହୁସାଧନା ଫଳରେ ଏପରି ମାନସିକତାର ସୃଷ୍ଟି ହୁଏ । ନିଷ୍ଠାପର ଭାବେ ଇଷ୍ଟଭୃତି କରୁ କରୁ ଇଷ୍ଟଙ୍କୁ ସବୁକିଛି

ବାସ୍ତବରେ ଦେଇ ଦେବାର ମାନସିକତା ସମ୍ଭବ ହୁଏ । ସେଥିପାଇଁ ପ୍ରଥମେ ପ୍ରଥମେ ପଇସା, ଟଙ୍କା ଦେଇ ଆରମ୍ଭ କରାଯାଏ । ନିତ୍ୟ ଭୋଜ୍ୟ ଅନୁକଳ୍ପ ଅର୍ଥ ଦିଆଯାଏ । ବର୍ତ୍ତମାନ ମଣିଷର ଲୋଭ ତଥା ଆସକ୍ତି ଅର୍ଥ ଉପରେ ନିବଦ୍ଧ । ଅର୍ଥ ହିଁ ଆଜିର ଦୁନିଆରେ ଅନର୍ଥର ମୂଳ କାରଣ, ଯଦି ତାହା ପରମାର୍ଥ ନହୁଏ । ଶ୍ରୀଶ୍ରୀଠାକୁର ସେହି ଅର୍ଥକୁ ହିଁ ପ୍ରଥମେ ନିତ୍ୟ ଇଷ୍ଟାର୍ଥେ ଉତ୍ସର୍ଗ କରିବାକୁ କହିଲେ । ଇଷ୍ଟାର୍ଥେ ବାସ୍ତବରେ ନିବେଦନ ନ କରି ସମର୍ପଣର କଥା ହଜାରବାର ମୁହଁରେ କହିଲେ ବା ମନେମନେ ଭାବିଲେ ହୁଏ ନାହିଁ ।

ତ୍ୟାଗରେ ହିଁ ଭୋଗର ପ୍ରତିଷ୍ଠା । ଭୋଗରେ ବିଭୋର ରହି ଅହଂକାର ବଶତଃ ଯେଉଁ ତ୍ୟାଗ - ତାହା ତ୍ୟାଗ ନୁହେଁ, ଏଣୁ ଇଷ୍ଟାର୍ଥେ ତ୍ୟାଗ ହିଁ ପ୍ରକୃତ ତ୍ୟାଗ ଏବଂ ଏହା ହିଁ ଅନାସକ୍ତ ଭାବ ସୃଷ୍ଟି କରେ ।

କେଷ୍ଟଦା' (ବୈଜ୍ଞାନିକ କୃଷ୍ଣପ୍ରସନ୍ନ ଭଟ୍ଟାଚାର୍ଯ୍ୟ)ଙ୍କର ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀଶ୍ରୀଠାକୁର କହିଥିଲେ - "ଲୋଭ ଜିନିଷଟା ହିଁ ବିଶ୍ରୀ । ସେଥିରେ ମଣିଷ ଖତମ ହୋଇଯାଏ । ମୁଁ ଦେଖିଛି ଯେଉଁମାନେ ଶୁଧୁ ଦିଅନ୍ତି, ସେମାନେ ଠେଲି ଉଠନ୍ତି - ଦେବାର Urge ହିଁ (ଆକୂତି ହିଁ) କାଳେ କାଳେ ବଢ଼ାଇ ଦିଏ ସେମାନଙ୍କର ଶ୍ରେୟଙ୍କୁ ଦେବାର ବୁଦ୍ଧି ଓ ଅଭ୍ୟାସ ଥିଲେ । ତାହାହିଁ ମଣିଷକୁ ଯୋଗ୍ୟକରି ତୋଳେ । ସ୍ୱପ୍ନ ଦେଖିଥିଲି - ଇଷ୍ଟଭୃତି ହେଲା ସାମର୍ଥୀଯୋଗ psycho-physical devotion (ମାନସ ଓ ଶାରୀର ଭକ୍ତି) ।"

'ଭଗବାନଙ୍କଠାରେ କର୍ମଫଳ ଯଦି ତ୍ୟାଗ ବା ନିବେଦନ ନ କରୁ ଜୀବନର ଉଦ୍‌ବର୍ଦ୍ଧନ ହୁଏନା । ଯାହାଙ୍କୁ ଠାରୁ ଜ୍ୟୋତି ପାଉ ସେଠାରେ ଖାଲି କରି ନ ତୋଳିଲେ ଆଲୋକ ପାଉନା, ଜ୍ୟୋତି ଆଉ ପାଉନା । ଭୋଗ କରିବାକୁ ଗଲେ ଯେ ଉତ୍ସଠାରୁ ପାଉ ତାଙ୍କ ପାଇଁ ତ୍ୟାଗ କରିବାକୁ ହୁଏ ।'

# ଇଷ୍ଟଭୃତି ଓ ବିପଦ ଅତିକ୍ରମଣୀ ଶକ୍ତି

ଇଷ୍ଟଭୃତିର ନୈଷ୍ଠିକ ନିୟମିତ ପରିପାଳନ ମନୁଷ୍ୟର ଶରୀର ବିଧାନ ଓ ମନୋଜଗତରେ ଏପରି ସତ୍ତା-ସଂରକ୍ଷଣୀ ଶକ୍ତି ଓ ବୁଦ୍ଧିର ସମାବେଶ କରେ ଯେ, ଆପଦ-ବିପଦ ଓ ଦୈବ-ଦୁର୍ବିପାକ ଇତ୍ୟାଦିର ଟେର୍ ସେ ପାଇ ପାରେ ଏବଂ ଏଥିରୁ ଅନାୟାସରେ ତରିଯାଇପାରେ । ଇଷ୍ଟଧନ୍ଦାରେ ଯିଏ ବ୍ୟାପୃତ, ଅନିଷ୍ଟକୁ ନଷ୍ଟ କରିବାର କୌଶଳ, ଶକ୍ତି ଓ ମନୋବଳ ତା'ର ସ୍ୱତଃ ଆୟତରେ ଥାଏ । ତେଣୁ ପ୍ରଳୟରେ ମଧ୍ୟ ସେ ନଷ୍ଟ ହୁଏ ନାହିଁ ।

ଶ୍ରୀଶ୍ରୀଠାକୁରଙ୍କ ବାଣୀ ଭିତରେ ଦେଖୁଁ -

"ଯେତେ ହିଁ ଆସୁ ଆପଦ-ବିପଦ
ଯେପରି ହିଁ ହେଉ ପ୍ରାଣ -
ଇଷ୍ଟଭୃତି ଆଣେ ହିଁ ଆଣେ
ସବୁରି ପରିତ୍ରାଣ ।"[୪୨]

ଶ୍ରୀଶ୍ରୀଠାକୁର ଆଲୋଚନା ପ୍ରସଙ୍ଗରେ କହିଛନ୍ତି - "ଗୁରୁଙ୍କୁ ପ୍ରତିଦିନ ପ୍ରୀତି-ଅବଦାନ ସ୍ୱରୂପ ଭୋଜ୍ୟ ନିବେଦନ କରିବା ପ୍ରଥାଟା ଖୁବ୍ ଭଲ । ଏଥିରେ ଶରୀର ମନର ଗୋଟାଏ ଯୁକ୍ତ ଆଗ୍ରହସନ୍ଦୀପ୍ତ ଟାଣ ତାଙ୍କ ଉପରେ ଗଜାଏ । ପିଲାପାଇଁ କରୁ ବୋଲି ଯେପରି ତା' ଉପରେ ଟାଣ ହୁଏ । ସକାଳେ ଉଠି ମୁଖଟୁଖ ଧୋଇ ଧ୍ୟାନ-ସୁମିରଣ କରି ଭକ୍ତିଭରେ ନିବେଦନ କରି ରଖିଦେଲି । ମାସାନ୍ତେ ଅନୁକଳ୍ପେ ଅର୍ଘ୍ୟ ପଠାଇ ଦେଲି । ଯେତେବେଳେ ଏହାର ଭୁଲ ହୁଏ ସେତେବେଳେ ବୁଝାଯାଏ ଯେ, ମୋର ଚଳିବାରେ କୌଣସି ଗୋଳମାଳ ହେଉଛି । ହୁଏତ କୌଣସି ବିପଦ ଆସିପାରେ । ତେଣୁ ସେତେବେଳେ ବିହିତ ପ୍ରାୟଶ୍ଚିତ କରି କଠୋର ଭାବେ ଏଇଟା ଆଙ୍କୁଡି ଧରିବାକୁ ହୁଏ । ଆମର ତନୁ-ମନ-ଧନ ଦେଇ ଗୁରୁସେବା କରିବାକଥା । ଏଥିରେ ତାହାହିଁ ହୁଏ । ଅସମ୍ଭବ କ୍ଷମତା ଏହାର ।"[୪୩]

ବିପଦ ବିପର୍ଯ୍ୟୟ ସମୟରେ ଅନ୍ୟମାନେ ଯେଉଁଠି ତୃଣଖଣ୍ଡ ପରି ଉଡିଯାଆନ୍ତି ବା ଭାସିଯାଆନ୍ତି, ସେଠାରେ ଏହି ତପଃଚାରୀଗଣ ସ୍ତମ୍ଭପରି ଅଟଳ ଅଚଳ ହୋଇ ଠିଆ ହୋଇ ରୁହନ୍ତି । ମଙ୍ଗଳର ଭରଣରେ ଯେଉଁମାନେ ଉଦଗ୍ର ଓ ଅତନ୍ଦ୍ର ହୋଇଥାଆନ୍ତି, ଅସଫଳ-ନିରୋଧୀ ପ୍ରେରଣା ଓ ପାଥେୟ ସେମାନଙ୍କର ନିତ୍ୟ ସହଚର । ଅନାୟାସରେ ସେମାନେ ଅମଙ୍ଗଳକୁ ଅତିକ୍ରମ କରି ଯାଆନ୍ତି । କରିଲେ ହିଁ ଏହା ଠିକ୍ ଠିକ୍ ବୁଝାଯାଏ । ନକରି କେବଳ ଯୁକ୍ତି-ତର୍କ ବା ତତ୍ତ୍ୱ ବିଳାସିତା ଭିତରେ ରହିଲେ ଏହା କିଛିମାତ୍ର ବୁଝାଯାଏ ନାହିଁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର କଥା । ଶୈଳେନ୍ ଭାଇ ପ୍ରଶ୍ନ କଲେ - "ଯୁଦ୍ଧ ଫଳରେ ଯେଉଁ ଦାରୁଣ ଦୁର୍ଦ୍ଦିନ ଆସିବ, ସେଥିରେ ମଣିଷ ସ୍ତ୍ରୀ-ପୁତ୍ରାଦି ନେଇ ମୁଠାଏ ଭାତ ପାଇଁ ହୁଏତ ପଥେ ପଥେ ଘୁରି ବୁଲିବ, ସେପରି ଅବସ୍ଥାରେ କ'ଣ ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ ପାଳନ କରିବା ତା' ପକ୍ଷେ ସମ୍ଭବ ହେବ ? କିମ୍ବା କେହି ଯଦି କେଉଁଠାରେ ଅବରୁଦ୍ଧ ହୁଏ, ତେବେ ସେ କ'ଣ କରିବ ?'

ଉତ୍ତରରେ ଶ୍ରୀଶ୍ରୀଠାକୁର କହିଛନ୍ତି, - "ତା'ହେଲେ ଦେଖିବୁ ଇଷ୍ଟଭୃତି, ସ୍ୱସ୍ତ୍ୟୟନୀର କଥା ସେତେବେଳେ ଭଲରୂପେ ମୁଣ୍ଡରେ Set (ପଶିବ) କରିବ । ଏଇ ଅବସ୍ଥାରେ ଭୋଜ୍ୟ ଫଳ, ଫୁଲ, ଜଳ କିଛି ଯଦି ନ ଜୁଟେ ମୁଠାଏ ବାଲି ତ ନିବେଦନ କରି ପାରିବ । ନିୟମିତ ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ କରିବା ଫଳରେ ଯାହା ଭିତରେ ଯେଉଁ energy (ଶକ୍ତି) ମହଜୁତ ହୋଇଛି ବିପଦ ସମୟରେ ତାହାହିଁ ତାକୁ ରକ୍ଷା କରିବ । James କ'ଣ ତ କହିଛନ୍ତି ?"

ପ୍ରଫୁଲ୍ଲ ଦା' ପଢ଼ି ଶୁଣାଇଲେ - ଯେତେବେଳେ ସବୁ ଜିନିଷର ଅସ୍ତିତ୍ୱ ଟଳମଳ ହୋଇଉଠିବ, ଏବଂ ଦୁର୍ବଳ ନିର୍ଜୀବ ଲୋକମାନେ ଝଡରେ ତସୁ ପରି ଉଡିଯିବେ, ସେତେବେଳେ ସେ ସ୍ତମ୍ଭପରି ନିଜଶକ୍ତିରେ ଅଟଳ ଭାବରେ ଛିଡା ହୋଇ ରହିବ ।

ଶ୍ରୀଶ୍ରୀଠାକୁର – "ହଁ! ସତରେ ସେଇପରି ଏବଂ ତୁମେ ତାହା ବାସ୍ତବ ଭାବରେ ଦେଖିବାକୁ ପାଇବ । 'ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍" । ସାମାନ୍ୟ ଟିକିଏ ଯେଉଁମାନେ କରିଛନ୍ତି ବା କରନ୍ତି ସେମାନେ ମହା ବିପଦରୁ ରକ୍ଷା ପାଇବେ । ଶୂନ୍ୟରୁ ସେମାନେ employment (କର୍ମ ନିଯୁକ୍ତି), activity (କର୍ମ) creat (ସୃଷ୍ଟି) କରିନେବେ, ସମସ୍ତେ ସେତେବେଳେ ହୃଦୟକୁ ଉଜାଡି କରି ଇଷ୍ଟାର୍ଘ୍ୟ ଦେବେ, ସେଇ ଉଚ୍ଛୁଳା ହୃଦୟରୁ ଅମୃତ ସୃଷ୍ଟି ହେବ ।"

ପୁନଶ୍ଚ, ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଦେଖୁଁ –

"ବିପଦ-ଆପଦ ବେଡାଜାଲେ
ଶକ୍ତି ଯଦି ପେତେ ଚାସ୍
ଶ୍ରଦ୍ଧାଭରେ ଇଷ୍ଟଭୃତି
ନିତ୍ୟ ପାଳିସ୍ କାଟ୍‌ବେ ପାଶ,
ନିତ୍ୟ କରିସ୍ ଇଷ୍ଟଭୃତି
ପ୍ରାଣପଣେ ଯା' ପାରିସ୍,
ଦୈନନ୍ଦିନ ଏଇ କରାଟାଇ
ଆନବେ ବୟେ ଆଶିସ୍,
ଧର୍ମ-କର୍ମ ଯତଇ କରିସ୍
ଇଷ୍ଟଭୃତି ଫେଲେ
ସବଇ ଜାନିସ୍ ହଲ ବ୍ୟର୍ଥ
ଓରେ ଆର୍ଯ୍ୟଛେଲେ ।"୪୫

ଅତଏବ, ଇଷ୍ଟଭୃତି ନିତ୍ୟ କରିବା ଫଳରେ ଯେଉଁ ଶକ୍ତି ସୃଷ୍ଟି ହୁଏ, ତାହାହିଁ ମନୁଷ୍ୟକୁ ନାନାପ୍ରକାର ବିପଦ-ଆପଦରୁ ରକ୍ଷା କରେ । ଇଷ୍ଟଭୃତିରେ ହିଁ ଶକ୍ତି ।

ଜ୍ଞାନ ଦା' ପ୍ରଶ୍ନ କଲେ – "ଇଷ୍ଟଭୃତି ଯେ ମଣିଷ କରିବେ, ତାହା ପଛରେ ଗୋଟାଏ ବିଶ୍ୱାସ ଦରକାର ତ !"

ଶ୍ରୀଶ୍ରୀଠାକୁର - "ବିଶ୍ୱାସ ଅବିଶ୍ୱାସର କଥା ନୁହେଁ । ତାଙ୍କୁ ଦେବା, ଏଇ ସୁକେନ୍ଦ୍ରିକ ଆକୃତିରେ ଯାହା ହେବାର ତାହା ହେବ । ଯାହାଙ୍କଠାରେ ସୁକେନ୍ଦ୍ରିକ ହେବି, ଅର୍ଜନ କରିବି ଯାହାଙ୍କପାଇଁ, ମୋର adjustment (ନିୟନ୍ତ୍ରଣ) ସେପରି ହେବ । ମୋର ବନ୍ଧୁବାନ୍ଧବ, ପିଲା-ସ୍ତ୍ରୀ, ଆତ୍ମୀୟ-ସ୍ୱଜନ, ଟଙ୍କା-ପଇସା, ପ୍ରବୃତ୍ତି, ଘରସଂସାର ଯାବତୀୟ ଯାହାକିଛିର ତଦନୁପାତିକ meaningful adjustment (ସାର୍ଥକ ବିନ୍ୟାସ) ହେବ । ମୋର ଯାହା କିଛି ଦେଇ ତାଙ୍କୁ fulfil (ପୂରଣ) କରିବି । ସେ ହିଁ ସର୍ବାଗ୍ରେ, ମୁଁ ବି ସେଠାରେ ତଳେଇ ଯାଇଛି । ମୋର ଖାଇବା ଆଗରୁ ତାଙ୍କୁ ନିବେଦନ ମାନେ ମୁଁ ମୋର ଜଗତନେଇ ତାଙ୍କୁ ମୁଖ୍ୟକରି ଚାଲିଛି । ଦୈନନ୍ଦିନ ଏଇ କରିବା ଫଳରେ ଏପରି ଶକ୍ତି ସଞ୍ଚିତ ହୋଇଥାଏ ଯେ, ବିଶେଷ ବିପଦ-ଆପଦ ମୁହୂର୍ତ୍ତରେ ତାଙ୍କର ପ୍ରଭାବରେ ସହଜରେ ଆମେ ବିପଦ ଉତ୍ତୀର୍ଣ୍ଣ ହୋଇପାରୁ । ଇଷ୍ଟାନୁଗ ଚଳନିରେ ଆୟୁର ଅପବ୍ୟୟ ହୁଏ କମ୍ । ତେଣୁ ମୂଳ ସମ୍ଭାବ୍ୟତାର ପୂର୍ଣ୍ଣ ସୁଯୋଗଟା ପାଇ ହୁଏ ।"[୪୬]

ତା ୬.୧.୧୯୫୧ ସକାଳବେଳା ଜନୈକ ଭାଇ ପ୍ରଶ୍ନ କଲେ - 'ସତ୍‌ସଙ୍ଗୀମାନେ ତ ରୋଗ-ଶୋକରେ ଅନେକ କଷ୍ଟ ପାଆନ୍ତି ।'

ଉତ୍ତରରେ ଶ୍ରୀଶ୍ରୀଠାକୁର କହିଲେ, - "ଦୁଃଖ-ବିପଦ ତ ଆସେ ହିଁ । ଅନ୍ୟମାନେ ଯେତେ ଅଭିଭୂତ ହୁଅନ୍ତି, ସତ୍‌ସଙ୍ଗୀମାନେ ସେତେ ହୁଅନ୍ତି ନାହିଁ । ସେମାନଙ୍କର ମନର ଜୋର୍ ଥିବାରୁ ସେମାନେ ହାର ମାନନ୍ତି କମ୍ । ପୁଣି, ଯେଉଁମାନେ ଠିକ୍-ଠିକ୍ ଯଜନ-ଯାଜନ-ଇଷ୍ଟଭୃତି କରନ୍ତି ସେମାନେ ବିପଦ-ଆପଦରୁ ରକ୍ଷା ବି ପାଆନ୍ତି ଖୁବ୍ । ସତ୍‌ସଙ୍ଗୀ ହେଲି ଅଥଚ ଆଚରଣ ପରାୟଣ ହେଲିନି, ଯୋଗ୍ୟତା ବଢ଼ିଲାନି, ତାହା ହେବନି ।

ଜଣେ ଯଦି ସତ୍ ହୁଏ ଏବଂ ଉଦ୍ୟୋଗୀ ହୁଏ ତାହେଲେ ସେ ଠିଆ ହେବ ହିଁ । ଆଉ ଯେଉଁମାନଙ୍କର ଚରିତ୍ର ଉନ୍ନତ, ସେମାନଙ୍କର ମଣିଷ-ସଂପଦ ବଢ଼ି ହିଁ ଚାଲେ ।

ଯେଉଁମାନେ ନିୟମିତ ଇଷ୍ଟଭୃତି କରନ୍ତି, ସେମାନେ ଯେ କେତେ ଭାବରେ ଉପକୃତ ହୁଅନ୍ତି, ତାହାର ଉଦାହରଣ ଦେଖାଯାଇଛି ଅଜସ୍ର । ଏଇଟା ବାଦ୍ ଦେଲେ ହିଁ ମଣିଷ ଅନେକଭାବେ ନିମ୍ନକୁ ଯାଏ ।" (ଆ.ପ୍ର.୨୦ଶ)

"ଯଜନ, ଯାଜନ, ଇଷ୍ଟଭୃତି
ମହାନ୍ ଭୟେ ତରାର ନୀତି ।"[୪୭]

'ଇଷ୍ଟଭୃତି'କୁ ସାମର୍ଥୀ-ଯୋଗ ମଧ୍ୟ କୁହାଯାଏ । ଯେଉଁଥିରେ ସବୁକିଛି ପ୍ରିୟପରମଙ୍କ ପାଇଁ ସମର୍ପଣ କରିବାର କଥା । ଆର୍ଯ୍ୟମୁନୀ ଋଷିଗଣ ଏଥିପାଇଁ ଜୀବନ-ବ୍ୟାପୀ ସାଧନା କରୁଥିଲେ । ଏହା ଫଳରେ ପ୍ରତିମୁହୂର୍ତ୍ତରେ ମଣିଷ ବିପଦ-ଆପଦରୁ ରକ୍ଷାପାଏ ଜାଣିବାରେ ହେଉ ବା ଅଜଣାରେ ହେଉ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ଭିତରେ ଦେଖୁ - "ଶରୀର-ମନର ଯୁକ୍ତ ଆଗ୍ରହ, ଇପ୍ସିତଙ୍କଠାରେ କେନ୍ଦ୍ରାୟିତ ହୋଇ କେବଳ ତାଙ୍କରି ଭରଣ-କାମନାରେ ଉପାର୍ଜନ କରି, ଦୈନନ୍ଦିନ ସର୍ବପ୍ରଥମେ ତାଙ୍କୁ ଯେଉଁ ଅର୍ଘ୍ୟ ନିବେଦନ କରାଯାଏ ତାକୁ ଇଷ୍ଟଭୃତି କହନ୍ତି, ପ୍ରାତ୍ୟହିକ ଏହି ଉକ୍ତ ଅବଦାନ ମଣିଷର ବିଧାନରେ ଏପ୍ରକାର ଶକ୍ତି ସମାବେଶ କରେ - ତା'ର ଆଗ୍ରହ-ଅନୁରତି-ମାଫିକ୍, - ଯେ କୌଣସି ଆପଦର ସମ୍ମୁଖୀନ ହେବା ମାତ୍ରେ ଏଭଳି ପ୍ରେରଣାରେ ଉଦ୍‌ବୁଦ୍ଧ କରି ତୋଳେ - ଯହିଁରେ ପ୍ରାୟଶଃ ଅନାୟାସରେ ହିଁ ସେ ମୁକ୍ତାପଦ ହୋଇଉଠିପାରେ, ଏହାକୁ ସାମର୍ଥୀ-ଯୋଗ ବି କୁହାଯାଏ, ତେଣୁ ଇଷ୍ଟଭୃତି-ପାଳନରେ ବିମୁଖ ହୁଅନା - ଆପଦରେ ବଞ୍ଚିବାରୁ କମ୍ ହିଁ ବଞ୍ଚିତ ହେବ ।"[୪୮]

ଶ୍ରୀଶ୍ରୀଠାକୁର 'ଆଲୋଚନା ପ୍ରସଙ୍ଗେ'ରେ କହିଛନ୍ତି - "ଇଷ୍ଟଭୃତିର ଗୁଣର କଥା କହି ଶେଷ କରାଯାଏନା । ମୁଁ ଏହାକୁ କୁହେ ସାମର୍ଥୀଯୋଗ । ଏଥିରେ ମଣିଷ ଯୋଗ୍ୟ ହୋଇଉଠେ । ନିୟମିତ ଭାବେ ascetic wayରେ (ତାପସ ଭାବେ) ଇଷ୍ଟଭୃତି କରିଲେ ବୋଧ କରି ପାରିବେ ବିପଦ-ଆପଦ

କାଟିବାର କ୍ଷମତା କେତେଦୂର ବଢ଼ିଯାଉଛି । ଦୁନିଆ ଟଳମଳ କରିଲେ ବି ଆପଣ ଅଟଳଭାବେ ଠିଆହୋଇ ପାରିବେ । ଶକ୍ତିର ଜାଗରଣ କୋଲ୍‌କାତାର ଦଙ୍ଗା ସମୟରେ ଭୁରିଭୁରି ଦୃଷ୍ଟାନ୍ତ ଦେଖା ଯାଇଛି - ଯେଉଁମାନେ ନିଷ୍ଠାର ସହିତ ଯଜନ-ଯାଜନ-ଇଷ୍ଟଭୃତି କରିଅଛନ୍ତି, ସେମାନେ ପରମପିତାଙ୍କ ଦୟାରେ କିପରି ଭାବେ ସମୂହ ବିପଦ ହାତରୁ ରକ୍ଷା ପାଇଯାଇଛନ୍ତି । ଅବଶ୍ୟ ଆତ୍ମସ୍ୱାର୍ଥର ଲୋଭ କିଛି କରି ନାହିଁ । ପରମପିତାଙ୍କୁ ଭଲ ପାଇ ତାଙ୍କ ପଥରେ ଚାଲିଲେ ପରମପିତା ସେମାନଙ୍କ ହାତଧରି ଚଳାଇ ନେଇ ମଙ୍ଗଳ କୋଳରେ ସମାସୀନ କରନ୍ତି ।"[୪୯]

ରାବଣର ପୁତ୍ର ଇନ୍ଦ୍ରଜିତ ନିତ୍ୟ ନିକୁମ୍ଭିଲା ଯଜ୍ଞ କରିବାପରେ ନିଜର ଦୈନନ୍ଦିନ କର୍ମ କରୁଥିଲା । ତେଣୁ ସେ ଥିଲା ଅଜେୟ । ଯେଉଁ ଦିନ ତା'ର ଏହି ଯଜ୍ଞରେ ବିଘ୍ନ ସୃଷ୍ଟି ହେଲା, ତା'ର ବିନାଶ ହେଲା । ଇଷ୍ଟଭୃତି ଅତୁଟ ରଖି ନିଷ୍ଠା ସହକାରେ କରି ଚାଲିଲେ ନିଜର ରକ୍ଷା କବଚ ନିଜ ହାତରେ ରହେ । ଏହା ଆୟୁଦ, ସ୍ୱାସ୍ଥ୍ୟଦ ଏବଂ ସବୁଦିଗରୁ ଭଲ । ଯିଏ କରିଚାଲିବ, ସେ ହିଁ ପ୍ରତିପଦକ୍ଷେପରେ ଉପଲବ୍ଧି କରିବ ।

"ଇଷ୍ଟଭୃତି ଯାହାର ଯେପରି କ୍ଷମତା ସେପରି ଭାବରେ ଯଦି କରୁ, ତାହା ଆମ ଜୀବନକୁ ବାନ୍ଧି ରଖିବ । ଆପଦ-ବିପଦର ମଧ୍ୟ ଦେଇ ବଞ୍ଚେଇ ନେଇ ଚାଲିବ ।"[୫୦]

## ଅପ୍ରତ୍ୟାଶୀ ଅବଦାନ

'ଇଷ୍ଟଭୃତି' ହେବା ଦରକାର ଅପ୍ରତ୍ୟାଶୀ ଅବଦାନ । ଇଷ୍ଟଭୃତି ଅର୍ଘ୍ୟ ଇଷ୍ଟଦେବତାଙ୍କ ଶ୍ରୀଚରଣରେ ନିବେଦନ ସମୟରେ ମନରେ କୌଣସି କାମନା-ବାସନା ରହିବା ଉଚିତ୍ ନୁହେଁ । ଇଷ୍ଟଙ୍କ ପ୍ରୀତି ଓ ତୃପ୍ତିପାଇଁ ଦେବାର ତାଗିଦ୍‌ରେ ଦେବା ଉଚିତ୍ । ଶାସ୍ତ୍ରରେ ଅଛି - "ଦତ୍ତ୍ୱା

ନାନୁକଥୟେତ୍" ।[୫୧] ଅର୍ଥାତ୍ ଦେଇ କେବେ ବି ତାହା କହିବ ନାହିଁ । ଦେବାରେ ଯେପରି ଅହଂ ଭାବ ଜାଗି ନଉଠେ । ନିରଭିମାନ ରହିବା ଦରକାର । ସ୍ୱାର୍ଥ ପ୍ରତ୍ୟାଶା କିଛି ରହିବ ନାହିଁ ।

ଶ୍ରୀଶ୍ରୀଠାକୁରଙ୍କ ବାଣୀ ଭିତରେ ଦେଖିବାକୁ ପାଉ,

"ପ୍ରତ୍ୟାଶାହୀନ ଇଷ୍ଟଭୃତି
ଜୀବନ-ଯଜ୍ଞର ପ୍ରଥମ ହୋମ,
ସେଇ ରାଗରେ ଚାଲିବୁ-ବୁଲିବୁ
ତାଙ୍କ ନିଦେଶରେ ରଖି ଦମ୍ ।"

"ଇଷ୍ଟଭୃତି କରିବା ସମୟେ
ସ୍ୱାର୍ଥ-ପ୍ରାର୍ଥନା କରିବୁ ନାହିଁ
ଶ୍ରଦ୍ଧା-ବନ୍ଦନ ଦେଇ ମନେ
ତା ଛଡା ଆଉ ଘୁରିବୁ ନାହିଁ ।"[୫୨]

ପୁନଶ୍ଚ,

"ଦେବତା ଇଷ୍ଟ ଶ୍ରେୟଜନେ
ଅପ୍ରତ୍ୟାଶୀ ଅବଦାନ,
ପ୍ରାର୍ଥନାକୁ ସତେଜକରେ
କୃତିଦୀପ୍ତ କରେ ପ୍ରାଣ ।"[୫୩]

"ଅପ୍ରତ୍ୟାଶୀ ଇଷ୍ଟଭୃତି
ଜୀବନ-ଯଜ୍ଞ ଉଦ୍‌ଯାପନେ
ଇଷ୍ଟେ କରିଲେ ଅର୍ଘ୍ୟଦାନ
ଦୀପ୍ତିଫୁଟି ଉଠଇ ପ୍ରାଣେ ।"[୫୪]

# ପଞ୍ଚମହାଯଜ୍ଞ

ଆର୍ଯ୍ୟଦ୍ୱିଜ ମାତ୍ରେ ହିଁ ନିତ୍ୟ ପଞ୍ଚମହାଯଜ୍ଞ ଅନୁଷ୍ଠାନ କରୁଥିଲେ । ଏହି ଯଜ୍ଞ କରିବା ଭିତରଦେଇ ନିଜର ବ୍ୟକ୍ତିତ୍ୱର ବିକାଶ ଘଟୁଥିଲା । ଶ୍ରୀଶ୍ରୀଠାକୁର କହିଛନ୍ତି - "ପଞ୍ଚଯଜ୍ଞ' ମାନେ finer କିମ୍ବା grosser, superior କିମ୍ବା inferior ସବୁ entity କୁ ହିଁ ଶ୍ରଦ୍ଧା ବା ଭଲପାଇବା ସହିତ ଯେପରି କରିଲେ ସେମାନେ ସମ୍ବର୍ଦ୍ଧିତ ଏବଂ ଜୀବନ ଓ ବୃଦ୍ଧିରେ ଉନ୍ନତ ହୋଇ ପାରେ ବା ପାରନ୍ତି, ଆମମାନଙ୍କ ଅସ୍ତିତ୍ୱ ଓ ଉନ୍ନତିକୁ intact ରଖିବା ମାନସରେ ସେହି ସମସ୍ତ environmentକୁ ସେବା କରିବା, ପୂଜା କରିବା ଇତ୍ୟାଦି, ଆଉ, ଏହିଗୁଡିକୁ ହିଁ ଋଷିମାନେ ପାଞ୍ଚଭାଗରେ ଭାଗ କରିଛନ୍ତି - ଆଉ ଏଗୁଡିକ ପ୍ରତି ଆର୍ଯ୍ୟର ଅବଶ୍ୟ କରଣୀୟ । ତେଣୁ 'ଆର୍ଯ୍ୟସ୍ଥାନ' ହେଉଛି the nation of culture. ସେମାନଙ୍କ ମଧ୍ୟରେ ଯେଉଁମାନେ cultureରେ initiate ହେବାପାଇଁ ଦ୍ୱିଜତ୍ୱ ଗ୍ରହଣ କରିଛନ୍ତି, ଅର୍ଥାତ୍ ବିପ୍ର, କ୍ଷତ୍ରିୟ, ବୈଶ୍ୟ - ସେମାନେ ଜୀବନ ଓ ବୃଦ୍ଧିର ଅନୁକୂଳ ଓ ଅନୁପୂରକ ଏହିଗୁଡିକୁ ନିତ୍ୟକରଣୀୟର ଭିତରେ ହିଁ ଗଣ୍ୟ କରି ନେଇଥିଲେ ।"[୪୫]

'ମନୁ ସଂହିତା'ରେ ଅଛି - ପ୍ରତ୍ୟେକ ଆର୍ଯ୍ୟଙ୍କର ପଞ୍ଚଯଜ୍ଞ ଅବଶ୍ୟ କରଣୀୟ । ଦେବଯଜ୍ଞ, ଋଷିଯଜ୍ଞ, ପିତୃଯଜ୍ଞ, ନୃ-ଯଜ୍ଞ ଓ ଭୂତଯଜ୍ଞ - ଏହାକୁ ପଞ୍ଚଯଜ୍ଞ କୁହାଯାଏ ।

"ଋଷିଯଜ୍ଞଂ ଦେବଯଜ୍ଞଂ ଭୂତଯଜ୍ଞଞ୍ଚ ସର୍ବଦା
ନୃଯଜ୍ଞଂ ପିତୃଯଜ୍ଞଞ୍ଚ ଯଥାଶକ୍ତି ନ ହାପୟେତ୍ ।"

*– ମନୁସଂହିତା-୪-୨*

ଏହି ପଞ୍ଚଯଜ୍ଞର ବ୍ୟାଖ୍ୟା 'ମନୁସଂହିତା'ରେ ଦିଆଯାଇଛି । ଅଧ୍ୟାପନାକୁ ବ୍ରହ୍ମଯଜ୍ଞ, ପିତୃତର୍ପଣକୁ ପିତୃଯଜ୍ଞ, ହୋମ ଇତ୍ୟାଦିକୁ ଦେବଯଜ୍ଞ, ଭୂତ-

ବଳିକୁ ଭୂତଯଜ୍ଞ, ଅତିଥି ସେବାକୁ ନୃ-ଯଜ୍ଞ କୁହାଯାଏ । 'ଶତପଥବ୍ରାହ୍ମଣ' ଓ 'ଆଶ୍ୱଳାୟଣୀୟ ଗୃହ୍ୟସୂତ୍ରମ୍'ରେ ପଞ୍ଚଯଜ୍ଞ ବିଷୟରେ କୁହାଯାଇଛି - ଦେବଯଜ୍ଞ, ବ୍ରହ୍ମଯଜ୍ଞ, ପିତୃଯଜ୍ଞ, ମନୁଷ୍ୟଯଜ୍ଞ ଓ ଭୂତଯଜ୍ଞ ।

"ପଞ୍ଚୈବ ମହାଯଜ୍ଞାଃ । ତାନ୍ୟେବ ମହାସତ୍ରାଣି ଭୂତଯଜ୍ଞୋ ମନୁଷ୍ୟଯଜ୍ଞଃ ପିତୃଯଜ୍ଞୋ ଦେବଯଜ୍ଞୋ ବ୍ରହ୍ମଯଜ୍ଞ ଇତି"

– ଶତପଥବ୍ରାହ୍ମଣ-୧୧ଶ କାଣ୍ଡ

"ଅଥାଥଃ ପଞ୍ଚଯଜ୍ଞାଃ । ଦେବଯଜ୍ଞୋ ଭୂତଯଜ୍ଞ ପିତୃଯଜ୍ଞୋ ବ୍ରହ୍ମଯଜ୍ଞୋ ମନୁଷ୍ୟଯଜ୍ଞ ଇତି । ତାନ୍ୟେତାନ୍ ଯଜ୍ଞାନ୍ ଅହରହଃ କୁର୍ବୀତି ।"

- ଆଶ୍ୱଳାୟମଂୟୁଗହ୍ୟସୂତ୍ରମ୍

ଏସବୁ ଅହରହ କରିବାକୁ ନିର୍ଦ୍ଦେଶ ଦିଆଯାଇଛି ।

ଶ୍ରୀଶ୍ରୀଠାକୁର କହୁଛନ୍ତି -

"ଯଜ୍ଞମାନେ ବୁଝିଲୁ କ'ଣ ତୁଇ ?
ଆଦର-ସେବାରେ-ଯତ୍ନେ ପାଳିବା
ଆର୍ଯ୍ୟପିଲାର ନିତ୍ୟନୀତି -
ପଞ୍ଚଯଜ୍ଞେ ଜୀବନ ଢ଼ାଳିବା
ବ୍ରହ୍ମଯଜ୍ଞ ଦେବଯଜ୍ଞ
ନୃଯଜ୍ଞ ଆଉ ପିତୃଯଜ୍ଞ
ଭୂତଯଜ୍ଞେ ପରିସ୍ଥିତିର
ସେବାବର୍ଦ୍ଧନ କରେ ପ୍ରାଜ୍ଞ ।"[୪୬]

ଆଜିର ସଭ୍ୟ ମଣିଷ ଏସବୁ ବିଷୟରେ ଚିନ୍ତା କରିବା ଦୂରର କଥା, ବରଂ ଏହାର ଆବଶ୍ୟକତା ଅନୁଭବ କରିପାରୁନି । ଅନାବଶ୍ୟକ ଭାବି ଏଡାଇ ଚାଲିଛି । ଆର୍ଯ୍ୟ ମୁନି-ଋଷିମାନେ ହଜାର ହଜାର ବର୍ଷ ଗବେଷଣା ତଥା ଆଚରଣ କରି ପଞ୍ଚମହାଯଜ୍ଞ ନିତ୍ୟ ଆଚରଣ କରିବାର ନିର୍ଦ୍ଦେଶ ଦେଇଛନ୍ତି । ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର ଏହାକୁ ଯୁଗୋପଯୋଗୀ

କରି ଯଜନ-ଯାଜନ-ଇଷ୍ଟଭୃତିର ବିଧାନ ଦେଇଛନ୍ତି । ବିଶେଷତଃ ଇଷ୍ଟଭୃତି ସମ୍ୟକ୍ ଭାବେ ପରିପାଳନ କରି ଚାଲିଲେ, ଏହି ପଞ୍ଚଯଜ୍ଞ ହିଁ ଆଚରିତ ହୋଇଥାଏ । ଏଥିରେ ଅଛି ବିଶ୍ୱ ପରିବେଶ ପ୍ରତି ଆମମାନଙ୍କର କରଣୀୟ ଆଚରଣ କରିବା । ଆମେ ଏ ବିଶ୍ୱ-ଦୁନିଆରୁ ସବୁ ନେବା, ଆଉ କିଛି ଦେବାନି - ଏ ଚିନ୍ତା ଅକୃତଜ୍ଞତାର ଲକ୍ଷଣ । ଏକତରଫାଭାବ ବେଶୀଦିନ ଟିକ୍ତିରୁହେନି । ଏହା ଆର୍ଯ୍ୟ ଋଷିଗଣ ଉପଲବ୍ଧି କରି ଏହିପ୍ରକାର ବିଧାନ ଦେଇଛନ୍ତି । ଏହାହିଁ କର୍ତ୍ତବ୍ୟ । ଇଷ୍ଟଭୃତି ଯିଏ ନିତ୍ୟ କରନ୍ତି, ସେ ନିତ୍ୟ ପଞ୍ଚମହାଯଜ୍ଞ ପରିପାଳନ କରିଥାଆନ୍ତି ।

ଭୂତଯଜ୍ଞ ଭିତରେ ଭୂତବଳି କଥା ଅଛି । 'ବଳି'ର ସଂଜ୍ଞା ବିରୂପ ହୋଇ ପଶୁବଧରେ ପର୍ଯ୍ୟବସିତ । 'ବଳି' ଶବ୍ଦର ଆଭିଧାନିକ ଅର୍ଥ - ବର, ଉପହାର, ଇତ୍ୟାଦି । ଅତଏବ ବଳିର ମାନେ ହେଲା ପୂଜୋପହାର । 'ବଳି' ଶବ୍ଦ ଆସିଛି ବଲ୍ ଧାତୁରୁ, ଅର୍ଥ - ଜୀବନ, ବେଷ୍ଟନ, ସମୃଦ୍ଧି, ଦାନ ଇତ୍ୟାଦି । ଏତତ୍‌ବ୍ୟତୀତ 'ବଲ୍' ଧାତୁରେ ଯେ ହିଂସା ଓ ବଧ ଅଛି, ତା'ରମାନେ ଜୀବନ ଓ ସମୃଦ୍ଧିର ହାନିକର ଯାହା ତା'ପ୍ରତି ହିଂସା କରିବା ଓ ତାକୁ ବଧ କରିବା ।

ଆର୍ଯ୍ୟମାନଙ୍କ ଶାସ୍ତ୍ରରେ ବୈଶ୍ୱଦେବ-ବଳି ଦେଖିବାକୁ ମିଳେ । ବୈଶ୍ୱଦେବମାନେ ବିଶ୍ୱଦେବ ସମ୍ବନ୍ଧୀୟ । 'ବିଶ୍ୱଦେବାଃ', ଅର୍ଥାତ୍ ସମସ୍ତ ଦେବଗଣ । ଯେଉଁଠି ସର୍ବଦେବତା ଅଧିଷ୍ଠିତ ଲାଭ କରିଛନ୍ତି - ସେ ହେଉଛନ୍ତି ଇଷ୍ଟ-ଗୁରୁ-ପୁରୁଷୋତ୍ତମ । ସେଥିପାଇଁ କୁହାଯାଏ 'ସର୍ବଦେବମୟୋ ଗୁରୁ' । ସେ ହିଁ ଅଗ୍ନିମୁଖ, ପରଂବ୍ରହ୍ମଙ୍କ ସାକାର ରୂପ, ଧେୟ, ଯାଜ୍ୟ ଓ ଉପାସ୍ୟ ।

"ଇଷ୍ଟଭୃତି ଭିତରେ ପଞ୍ଚମହାଯଜ୍ଞର ମୋଟାମୋଟି ଜିନିଷଟା ଅଛି ।"[୫୭]

"ବଞ୍ଚିବା ବଢ଼ିବାର ଜୀବନଯଜ୍ଞ
ଇଷ୍ଟଭୃତିର ଅମୋଘଟାଣେ
ବଢ଼ାଇ ନେଇ ଜଗାଇ ତୋଳ
ଦୃପ୍ତ ହୁଅ ତୁ ସେବାର ଟାଣେ ।

ମଙ୍ଗଳଯାଗର ପ୍ରାଣ ପ୍ରତିଷ୍ଠା
ଇଷ୍ଟଭୃତି ଠିକ୍ ଜାଣିଥା
ଇଷ୍ଟଭୃତି-ସନ୍ଦୀପନା
ସବୁ ବ୍ୟାପାରରେ ହିଁ ଠିକ୍ ରଖିଥା ।"[୫୮]

ଇଷ୍ଟଭୃତି ପ୍ରସଙ୍ଗରେ କଥା ଉଠିବାରୁ ଶ୍ରୀଶ୍ରୀଠାକୁର କହିଲେ - ସାଧାରଣଙ୍କ ମଧ୍ୟରେ ଏ ବ୍ୟାପାରରେ ଗୋଟାଏ concéption (ଧାରଣା) ହିଁ ନଥିଲା । କିନ୍ତୁ ଧୀରେ ଧୀରେ ପ୍ରସାରି ଯାଉଛି । ଏଥିରେ କିପରି ଭାବରେ ଯେ ଗୋଟାଏ unconscious adjustment (ଅଚେତନ ସାମଞ୍ଜସ୍ୟ) ହୁଏ, ତାହା ଠଉରାଇ ହୁଏନା । କିନ୍ତୁ ହୁଏ, ତାହା ନିର୍ଘାତ ।

କେଷ୍ଟଦା' (ବୈଜ୍ଞାନିକ କୃଷ୍ଣପ୍ରସନ୍ନ ଭଟ୍ଟାଚାର୍ଯ୍ୟ - ସତ୍‌ସଙ୍ଗର ଋତ୍ୱିଗାଚାର୍ଯ୍ୟ) କହିଲେ - ଶାସ୍ତ୍ରରେ ଉଲ୍ଲେଖ ଅଛି ଯୁଗେ ଯୁଗେ ଯଜ୍ଞଭାକ୍ ବଦଳି ଯିବ, ଏକ ଏକ ଯୁଗରେ ଏକ ଏକ ଜଣ । କେବେ ଦକ୍ଷ, କେବେ ବି ବିଷ୍ଣୁ, କେବେ ବି ମହାଦେବ ।

ଶ୍ରୀଶ୍ରୀଠାକୁର - ଯେତେବେଳେ ଯିଏ ଯୁଗପୁରୁଷୋତ୍ତମ, ଅର୍ଥାତ୍ ଯେବେ ଯିଏ ମହାଦେବ, ସେତେବେଳେ ସେ ଯଜ୍ଞଭାକ୍ ।[୫୯]

ଭଗବାନ ଶ୍ରୀକୃଷ୍ଣ କହିଛନ୍ତି - ଯଜ୍ଞାର୍ଥେ କର୍ମ ବନ୍ଧନମୁକ୍ତ କର୍ମ । ଯଜ୍ଞ ଅର୍ଥାତ୍ ସର୍ବଯଜ୍ଞର ସାକାର ଅଧୀଶ୍ୱର ଯଜ୍ଞଦେବତା ହେଉଛନ୍ତି ନରବିଗ୍ରହ ଯୁଗ ପୁରୁଷୋତ୍ତମ । ତାଙ୍କ ପ୍ରୀତି ଅର୍ଥେ କର୍ମ କରିବାର କଥା କୁହାଯାଇଛି । ଆଉ ଜୀବର ଜୀବନଯଜ୍ଞ ଇଷ୍ଟଭୃତି ହିଁ ପ୍ରୀତି ଅର୍ଘ୍ୟ ।

ଆର୍ଯ୍ୟ ଋଷିଗଣଙ୍କର ଦୃଷ୍ଟିଭଙ୍ଗୀ ବିଶାଳ ଓ ଅତୀବ ଗଭୀର ଥିଲା, ଯାହା ଅତ୍ୟାଧୁନିକ ଅତି ବିଜ୍ଞମାନଙ୍କର କଳ୍ପନାକୁ ଏପର୍ଯ୍ୟନ୍ତ ସ୍ପର୍ଶ କରି ପାରୁନି । ଏହି ଦୁନିଆରେ କେହି ଏକକ ନୁହଁନ୍ତି । ମୁଁ ସମସ୍ତଙ୍କର, ସମସ୍ତେ ମୋର । ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ ସମସ୍ତେ ମୋର ପରିବେଶ ଓ ବଞ୍ଚିବା ବଢ଼ିବାର ସହାୟକ । ଅନେକେ ଏହି ସତ୍ୟକୁ ଜାଣିଲେ ହେଁ ଆଚରଣଶୀଳ ନୁହଁନ୍ତି ।

ଇଷ୍ଟଦେବତାଙ୍କ ଉଦ୍ଦେଶ୍ୟରେ ଇଷ୍ଟଭୃତି ନିବେଦନ ମାଧ୍ୟମରେ ଏହା ଆଚରିତ ହୋଇଥାଏ । 'ଇଷ୍ଟଭୃତି' ହେଉଛି ଏହି ବୃହତ୍ତର ଜୀବନ-ଯାପନ କରିବାର ସୂକ୍ଷ୍ମସୂତ୍ର ।

ନିଷ୍ଠାପର ଭାବେ ନିୟମିତ ବିଧିମାଫିକ୍ ଇଷ୍ଟଭୃତି କରିବା ମାଧ୍ୟମରେ ପଞ୍ଚମହାଯଜ୍ଞ, ଅର୍ଥାତ୍ - ଋଷିଯଜ୍ଞ ବା ବ୍ରହ୍ମଯଜ୍ଞ, ଦେବଯଜ୍ଞ, ପିତୃଯଜ୍ଞ, ନୃ-ଯଜ୍ଞ ବା ମନୁଷ୍ୟଯଜ୍ଞ, ଭୂତଯଜ୍ଞ ପରିପାଳିତ ହୋଇଥାଏ । ଯିଏ କରିବେ ସେ ହିଁ ଅନୁଭୂତି ଭିତର ଦେଇ ଉପଲବ୍ଧି କରିପାରିବେ ।

- "ନିତ୍ୟ ପଞ୍ଚମହାଯଜ୍ଞ ଏପରି ଗୋଟାଏ ସୁନ୍ଦର ବିଧାନ ଥିଲା, ଯାହା ଜାତୀୟତାବୋଧ, ମାନବତାବୋଧକୁ ଏବଂ କୃଷ୍ଟିକୁ ଏକସଙ୍ଗେ ପୁଷ୍ଟକରି ତୋଳୁଥିଲା । ମଣିଷ ସହିତ ମଣିଷର ଆତ୍ମୀୟତାବୋଧ ପ୍ରତ୍ୟେକଙ୍କର ଅନ୍ତରରେ ଜାଗ୍ରତ ହୋଇ ଉଠୁଥିଲା ।"[୬୦]

ଗୃହସ୍ଥାଶ୍ରମରେ ରହି ପରିଜନଙ୍କ ସହିତ ଏହି ପଞ୍ଚଯଜ୍ଞର ଅନୁଷ୍ଠାନ କରିବାକୁ ହେଉଥିଲା । ଏଥିପାଇଁ ସ୍ୱତନ୍ତ୍ର କସରତ କରିବାକୁ ପଡୁନଥିଲା । ଏଥିରେ ଜୀବନ ଅଭ୍ୟସ୍ତ ହୋଇ ଉଠୁଥିଲା । ଅଭ୍ୟାସ ବଡ଼କଥା । ଇଷ୍ଟଭୃତି କରିବାରେ ଅଭ୍ୟସ୍ତ ହୋଇ ଉଠିଲେ, ଏହା ମଧ୍ୟ ଜୀବନରେ ସ୍ୱାଭାବିକ ହୋଇଉଠିବ ।

## ଇଷ୍ଟଭୃତି ହେଉଛି ସାମର୍ଥ୍ୟଯୋଗ

ନିତ୍ୟ ଇଷ୍ଟଭୃତି ପରାୟଣ ବ୍ୟକ୍ତି ସବୁଥିରେ ସମର୍ଥ ହୋଇଉଠେ । ଏଥିରେ ପୁରୁଷାକାର ଓ ଦୈବର ମିଳନ ଘଟେ ।

ଶ୍ରୀଶ୍ରୀଠାକୁର କେଷ୍ଟଦା'ଙ୍କୁ ୧୯୪୬ ଜୁଲାଇ ୨୦ରେ କହିଲେ - "ମୁଁ ଆଜି ନିଦରେ ସ୍ୱପ୍ନରେ ଆପଣଙ୍କୁ କହୁଛି, ଇଷ୍ଟଭୃତି ହେଉଛି Materialised abilityର concentration - ସାମର୍ଥ୍ୟଯୋଗ । ଅଧ୍ୟାତ୍ମଯୋଗ ସହିତ ଏହି

ସାମର୍ଥୀଯୋଗ ନ ରହିଲେ ସିଦ୍ଧି ହୁଏନା । ଅଧ୍ୟାତ୍ମଯୋଗ ହେଉଛି, ମନେ ମନେ ଚିନ୍ତା କରି କଳ୍ପନାରେ ଗୋଟାଏ ପୁତୁଳା ତିଆରି କରିବା । ଏହି ଯୋଗ ଯେ ପର୍ଯ୍ୟନ୍ତ materially ମୋର effortର concentrationର ଭିତର ଦେଇ ପୁତୁଳାଟି ଗଢ଼ି ନ ତୋଳିଲ, ସେ ପର୍ଯ୍ୟନ୍ତ ବାସ୍ତବ ଭାବେ ପୁତୁଳା ତିଆରି ହୁଏନା । ସାମର୍ଥୀଯୋଗ ହେଉଛି ଏଇ concentration of materialising efforts.

ଆଜି ଯେପରି ନୂଆକରି expressionଟା ଆସିଲା । ସ୍ୱପ୍ନ ଭିତରେ ବି ଅନେକ ନୂତନ ଜିନିଷ ପାଇ ହୁଏ । ଅଧ୍ୟାତ୍ମଯୋଗ ଓ ସାମର୍ଥୀ ଯୋଗ ଏ ଭାବରେ ଯେପରି ଆଉ କେବେ ବି କହିନି । ସମସ୍ତଙ୍କ ପାଖରେ ଯେପରି କହିବାକୁ ଲାଗିଲି । କହୁ କହୁ ନିଜକୁ ମଧ୍ୟ ଯେପରି ଭଲ ଲାଗିବାକୁ ଲାଗିଲା । ଭାବିଲି ବାଃ ।

ଯେଉଁ idea ସହିତ Motor action ଠିକ୍ ଠିକ୍ ହୁଏନା, ତାହା ଉଭେଇ ଯାଏ । କାର୍ଯ୍ୟକାରୀ ହୁଏନା, materialised ହୁଏନା - ସେଥିରେ ସିଦ୍ଧି ହୁଏନା ।"[୬୧]

"ଈଶ୍ୱରଙ୍କୁ ତୁମେ ଯେପରି ଦେବ, ଯେପରି ଅନ୍ତଃକରଣ ଓ ଅନୁବେଦନା ନେଇ ତାଙ୍କ ଉଦ୍ଦେଶ୍ୟରେ ଯେପରି ଯା'କରିବ, - ତୁମେ ପାଇବ ବି ତାହା ସେହିପରି, କାରଣ, ସେଇ ଐଶୀ-ଅନୁପ୍ରେରଣା ହିଁ ତୁମର ସାତ୍ତ୍ୱିକ ସମ୍ବେଗ ।"[୬୨]

ଯୋଗ୍ୟତା ବଢ଼ାଇବାକୁ ହେଲେ ନିଜକୁ ସମର୍ଥକରି ତୋଳିବାକୁ ହୁଏ । ଯୋଗ୍ୟତାହୀନ ସାମର୍ଥ୍ୟବିହୀନ ମଣିଷ ସବୁକ୍ଷେତ୍ରରେ ଅସଫଳ ହୁଏ, କୁଶଳ କୌଶଳୀ ହୋଇପାରେନା ।

"ତୁମେ ଶ୍ରେୟାର୍ଥକୁ ଯେତେଦୂର ଆପୂରଣ କରିପାରୁନା ବିହିତ ସମୟରେ - ତୁମର ଯୋଗ୍ୟତା ବି ବିଶୃଙ୍ଖଳ ପଥ ଧରି ବିଶୃଙ୍ଖଳ ହୋଇ ଝିମେଇ ଚାଲିଛି ସେତେ ହିଁ, ବୋଧିବୃତ୍ତି ମଧ୍ୟ ସେତେଟିକେ ପଥହରା ହୋଇ ଚାଲିବ ବିକେନ୍ଦ୍ରିକ ଚଳନରେ ଚାଲି ।"[୬୩]

ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଅଛି -

"ଆତ୍ମରକ୍ଷା-ଉପକରଣେ
ଇଷ୍ଟଭରଣ କରିବାକୁ ହୁଏ
କର୍ମଶକ୍ତିର ଯା'ରେ ସମାହାର
ତାକୁ ହିଁ ତ କହେ ପୁରୁଷାକାର
ପୁରୁଷାକାରରେ ଦୈବ ଯୋଜନ
ତାକୁ ହିଁ ଇଷ୍ଟଭୃତି କୁହେ ।"

## ଇଷ୍ଟଭୃତିର ପ୍ରଶସ୍ତି

ବିଭିନ୍ନ ଶାସ୍ତ୍ର, ପୁରାଣ, ଧର୍ମଗ୍ରନ୍ଥରେ ଇଷ୍ଟଭୃତିର ପ୍ରଶସ୍ତି ବହୁ ଭାବରେ ଦେଖିବାକୁ ମିଳେ । ବୈଦିକ ସଂସ୍କୃତିରେ ପଞ୍ଚମହାଯଜ୍ଞର ବ୍ୟବସ୍ଥା ଥିଲା । ଆର୍ଯ୍ୟମାତ୍ରେ ହିଁ ଏହି ପଞ୍ଚମହାଯଜ୍ଞାନୁଷ୍ଠାନ ନିତ୍ୟ ପାଳନ କରୁଥିଲେ । ଦେବଯଜ୍ଞ, ଋଷିଯଜ୍ଞ, ପିତୃଯଜ୍ଞ, ନୃ-ଯଜ୍ଞ ଓ ଭୂତଯଜ୍ଞ, - ଏହି ପାଞ୍ଚଟି ହେଉଛି ପଞ୍ଚମହାଯଜ୍ଞ । ଯଜ୍ଞରେ ହବିଃଆହୁତି ଦେବାର ନିର୍ଦ୍ଦେଶ ଅଛି । ଏଠାରେ ଇଷ୍ଟାର୍ଥେ ତ୍ୟାଗ ଓ ସମର୍ପଣର କଥା କୁହାଯାଇଛି ।

ଉପନିଷଦ୍ ଯୁଗରେ ଗୁରୁ ବା ଆଚାର୍ଯ୍ୟଙ୍କ ପ୍ରୀତ୍ୟର୍ଥେ ତାଙ୍କ ନିର୍ଦ୍ଦେଶରେ ଶିଷ୍ୟ ଭିକ୍ଷା ଦ୍ୱାରା ସଂଗୃହୀତ ଦ୍ରବ୍ୟ ଗୁରୁଙ୍କ ନିକଟରେ ନିବେଦନ କରୁଥିଲେ ଏବଂ ତାଙ୍କ ନିର୍ଦ୍ଦେଶରେ ଯାହାକିଛି ଗ୍ରହଣ କରୁଥିଲେ । ଆର୍ଯ୍ୟାଚାରର ଷଟ୍‌କର୍ମ ମଧ୍ୟରେ ଦାନ ଓ ପ୍ରତିଗ୍ରହ ଥିଲା । ଯାହାକୁ ଯୁଗୋପଯୋଗୀ କରି ଶ୍ରୀଶ୍ରୀଠାକୁର 'ଇଷ୍ଟଭୃତି' ବୋଲି ଅଭିହିତ କରିଛନ୍ତି । ବିଭିନ୍ନ ଉପନିଷଦ୍‌ରେ 'ଇଷ୍ଟାପୂର୍ତ୍ତି'ର କଥା କୁହାଯାଇଛି । ଇଷ୍ଟାପୂର୍ତ୍ତି ଓ ଇଷ୍ଟଭୃତି ସମପର୍ଯ୍ୟାୟବାଚୀ ଶବ୍ଦ । 'ଇଷ୍ଟାପୂର୍ତ୍ତି'ର ଅର୍ଥ-ଇଷ୍ଟଙ୍କୁ ପୂରଣ କରିବା ଏବଂ 'ଇଷ୍ଟଭୃତି'ର ଅର୍ଥ - ଇଷ୍ଟଙ୍କୁ ଭରଣ, ପୂରଣ, ପୋଷଣ ଓ ଧାରଣ କରିବା ।

ସ୍ମୃତିଶାସ୍ତ୍ରମାନଙ୍କରେ ଇଷ୍ଟଭୃତି ସଂପର୍କରେ ବିସ୍ତାରିତ ଭାବେ କୁହାଯାଇଅଛି । ଗୃହ୍ୟସୂତ୍ରକାର ଶାଙ୍ଖ୍ୟାୟଣ ଋଷି କହିଛନ୍ତି - "ଆଚାର୍ଯ୍ୟାୟଭୈକ୍ଷ୍ୟଂ ନିବେଦୟିତ୍ୱାଽନୁଜ୍ଞାତୋ ଗୁରୁଣାଭୁଞ୍ଜୀତ" । (୨/୬) । ଅର୍ଥାତ୍, ଭିକ୍ଷାସମୂହ ଆଚାର୍ଯ୍ୟଙ୍କୁ ନିବେଦନ କରି ତାଙ୍କର ଅନୁମତି ପ୍ରାପ୍ତ ହୋଇ ତା'ପରେ ଭୋଜନ କରିବ ।

ମନୁ କହିଛନ୍ତି -

"ବିଘସାଶୀ ଭବେନ୍ନିତ୍ୟଂ ନିତ୍ୟଂ ବାମୃତଭୋଜନଃ
ବିଘସୋଭୁକ୍ତଶେଷନ୍ତ ଯଜ୍ଞଶେଷଂ ତଥାମୃତମ୍ ।"

କୁଟୁମ୍ବ, ଅତିଥି ପ୍ରଭୃତିଙ୍କ ଭୋଜନ ପରେ ଯାହା ରୁହେ ତାକୁ 'ବିଘସ' ଏବଂ ଯଜ୍ଞ ହେବାପରେ ଯାହା ଅବଶିଷ୍ଟ ରୁହେ ତାକୁ 'ଅମୃତ' ବୋଲି କୁହାଯାଇଛି ।

ହରିଭକ୍ତିବିଳାସରେ ଅଛି -

"ଯତ୍ କିଞ୍ଚିଦନ୍ନପାନାଦି ପ୍ରିୟଂ ଦ୍ରବ୍ୟଂ ମନୋହରମ୍,
ସମର୍ପ୍ୟ ଗୁରବେ ପଶ୍ଚାତ୍ ସ୍ୱୟଂ ଭୁଞ୍ଜୀତ ପ୍ରତ୍ୟହମ୍ ।"

ପ୍ରତ୍ୟହ ପ୍ରଦତ୍ତ ଦ୍ରବ୍ୟ ଗୁରୁଙ୍କୁ ପ୍ରଦାନ କରିବାପରେ ନିଜେ ଗ୍ରହଣ କରିବ ।

ବ୍ରହ୍ମବୈବର୍ତ୍ତ ପୁରାଣରେ କୁହାଅଛି -

"ପିତରଂ ମାତରଂ ବିଦ୍ୟାମନ୍ତ୍ରଦଂ ଗୁରୁମେବଚ
ଯୋ ନ ପୁଷ୍ଣାତି ପୁରୁଷୋଯାବଜ୍ଜୀବଂଚ ସୋଽଶୁଚିଃ ।"(୩୦-୧୦୯)

ଅର୍ଥାତ୍, ଯେଉଁବ୍ୟକ୍ତି ପିତା, ମାତା ତଥା ବିଦ୍ୟା ଓ ମନ୍ତ୍ରଦାତା ଗୁରୁଙ୍କୁ ପୋଷଣ କରେ ନାହିଁ, ସେ ସାରାଜୀବନ ପାପରୁ ଶୁଦ୍ଧ ହୁଏ ନାହିଁ ।

"ବିଦ୍ୟାମନ୍ତ୍ରପ୍ରଦଃ ସତ୍ୟଂମାତୁଃ ପରତରୋ ଗୁରୁଃ
ନହି ତସ୍ମାତ୍ପରଃ କୋଽପି ବନ୍ଦ୍ୟଃ ପୂଜ୍ୟଶ୍ଚ ବେଦତଃ ।"(୩୨-୧୧୨)

ଅର୍ଥାତ୍ ବେଦର ନିର୍ଦ୍ଦେଶ ଅନୁସାରେ ଗୁରୁଙ୍କ ଅପେକ୍ଷା ଅଧିକ ବନ୍ଦନୀୟ ଓ ପୂଜନୀୟ ଦ୍ୱିତୀୟ କେହି ନୁହଁନ୍ତି ।

ଶ୍ରୀମଦ୍ ଭଗବତ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଉପଦେଶ ଛଳରେ ଇଷ୍ଟଭୋଜ୍ୟ ବା ଇଷ୍ଟଭୃତି ପ୍ରଦାନର କଥା କହିଛନ୍ତି ।

"ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତ୍ରାଃ
ତୈର୍ଦତ୍ତାନ ପ୍ରଦାୟୈଭ୍ୟୋ ଯୋ ଭୁନ୍‌କ୍ତେ ସ୍ତେନ ଏବ ସଃ ।"(୩-୧୨)

ଅର୍ଥାତ୍ ଦେବତାଗଣ ଯଜ୍ଞଦ୍ୱାରା ଆରାଧିତ ହୋଇ ତୁମମାନଙ୍କୁ ବାଞ୍ଛିତ ଭୋଗ୍ୟବସ୍ତୁସକଳ ପ୍ରଦାନ କରିବେ । ସୁତରାଂ ଏହି ଦେବତାଙ୍କ ପ୍ରଦତ୍ତ ବସ୍ତୁ ଦେବତାଙ୍କୁ ନିବେଦନ ନକରି ଯିଏ ଭୋଗ କରନ୍ତି, ସେ ନିଶ୍ଚୟ ହିଁ ଚୋର ।

"ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକ୍ଲିବିଷୈଃ
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ ।"(୩-୧୩)

ଅର୍ଥାତ୍, ଯଜ୍ଞାବଶେଷଭୋଜୀ ସନ୍ତଗଣ ସମସ୍ତ କଳୁଷରୁ ମୁକ୍ତ ହୁଅନ୍ତି । କିଂତୁ ଯେଉଁମାନେ କେବଳ ନିଜପାଇଁ ପାକ କରନ୍ତି, ସେହି ପାପାଚାରୀମାନେ ଅଘ ବା ପାପକୁ ହିଁ ଭୋଜନ କରନ୍ତି ।

ଅତଏବ ଏଠାରେ ଇଷ୍ଟଙ୍କୁ ଭୋଜ୍ୟ ନଦେଇ ନିଜେ ଅନ୍ନ ଜଳାଦି ଗ୍ରହଣ କରିବାକୁ ନିଷେଧ କରାଯାଇଛି । ପଞ୍ଚମହାଯଜ୍ଞ ପ୍ରତ୍ୟେକଙ୍କର ନିତ୍ୟ କରଣୀୟ । କଣ୍ଡୁନୀ (ଉଦୁଖଳ), ଉଦକୁମ୍ଭୀ, ପେଷଣୀ, ଚୁଲ୍ଲୀ ଓ ମାର୍ଜନୀ ଦ୍ୱାରା ଯେଉଁ ପଞ୍ଚବିଧ ପାପ ହୁଏ, ତାହା ଦୂର କରିବାପାଇଁ ପଞ୍ଚମହାଯଜ୍ଞ ଅବଶ୍ୟ କରଣୀୟ ।

ଖ୍ରୀଷ୍ଟିୟାନ୍ ସଂପ୍ରଦାୟରେ ଏଇ ଧର୍ମାବଲମ୍ବିମାନଙ୍କ ପ୍ରତି Churchrate (ଚର୍ଚ୍ଚରେଟ୍) ପ୍ରଦାନ କରିବାର ନିର୍ଦ୍ଦେଶ ରହିଛି । ବାଇବେଲ୍‌ରେ ଅଛି - "offer the sacrifices of righteousness" - (The pslams

Book - 1-45) । ପବିତ୍ର ଗ୍ରନ୍ଥ ବାଇବେଲ୍‌ରେ କେବଳ ଈଶ୍ୱରଙ୍କ ଉଦ୍ଦେଶ୍ୟରେ 'ନୈବେଦ୍ୟ' ନିବେଦନର କଥା କୁହାଯାଇଛି । "He who sacrifices to any God, except to the Lord only, he shall be utterly destroyed." (ଯେଉଁ ଲୋକ ସଦା ପ୍ରଭୁଙ୍କ ବ୍ୟତୀତ ଅନ୍ୟ କୌଣସି ଦେବତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରେ ସେ ବର୍ଜନୀୟ ଭାବେ ନଷ୍ଟ ହେବ ।) ସୁତରାଂ ବାଇବେଲ୍‌ରେ ପରମେଶ୍ୱର ପରମପିତାଙ୍କ ପାଇଁ ଉତ୍ସର୍ଗ, ସମର୍ପଣ ଓ ଦାନର କଥା ବହୁଭାବରେ କୁହାଯାଇଛି ।

ଇସ୍‌ଲାମ ସଂପ୍ରଦାୟରେ ଅବଶ୍ୟ ପାଳନୀୟ ଆଚାର-ଆଚରଣ ଭିତରେ 'ଜାକାତ୍'ର କଥା କୁହାଯାଇଛି । ପବିତ୍ର କୋରାନ୍ ପ୍ରତିଷ୍ଠିତ ରଖିଛନ୍ତି, ଜାକାତ୍ ଦେଉଛନ୍ତି, ଯେଉଁମାନେ ଅଙ୍ଗୀକାର ପାଳନ କରନ୍ତି ଓ ଦାରିଦ୍ର୍ୟ କିଂବା ନାନା ବିପଦାକୀର୍ଣ୍ଣ ଅବସ୍ଥାରେ ପତିତ ହୋଇ ମଧ୍ୟ ଧୈର୍ଯ୍ୟ ଅବଲମ୍ବନ କରନ୍ତି, ସେମାନେ ହିଁ ପୁଣ୍ୟବାନ୍, ସତ୍ୟବାଦୀ ଓ ଧାର୍ମିକ ।

ଇସ୍‌ଲାମର ପାଞ୍ଚ କାଲେମା ସହିତ ଶ୍ରୀଶ୍ରୀଠାକୁରଙ୍କ ପ୍ରବର୍ତ୍ତିତ ପଞ୍ଚବର୍ହିର ମେଳ ଅଛି । ଇସ୍‌ଲାମର ପଞ୍ଚ ନୀତି ହେଉଛି, - କାଲେମା, ନମାଜ, ଜାକାତ୍, ରୋଜା ଓ ହଜ୍ଜ ।

ଜାକାତ୍ ହେଉଛି ଧର୍ମାର୍ଥେ ଦାନ । ଏପରି ଆଉ କେତେ ପ୍ରକାର ମଧ୍ୟ ଅଛି, ଯେପରି ଛଦ୍‌କା, ଫେତ୍‌ରା ପ୍ରଭୃତି । ଏହାକୁ ଶ୍ରୀଶ୍ରୀଠାକୁର 'ଇଷ୍ଟଭୃତି' ବୋଲି କହିଛନ୍ତି, ଯାହାର ଅର୍ଥ ମଙ୍ଗଳର ଭରଣପୋଷଣ । ଯେଉଁଠି ଧର୍ମ, ମଙ୍ଗଳ ତ ଅବଶ୍ୟ ସେଠାରେ ଅଛି ।

ପବିତ୍ର କୋରାନ୍‌ରେ ଆଲ୍ଲାଙ୍କ ଉଦ୍ଦେଶ୍ୟରେ ଧନବ୍ୟୟର ନିର୍ଦ୍ଦେଶ ଦିଆଯାଇଛି ।

"ହେ ବିଶ୍ୱାସକାରୀମାନେ ! ଯାହାକିଛି ତୁମେମାନେ ଉପାର୍ଜନ କରିଅଛ, ସେଥିରୁ ଶୁଦ୍ଧବସ୍ତୁମାନ ଏବଂ ଯାହା ଆମେ ତୁମମାନଙ୍କ ପାଇଁ ଭୂମିରୁ ବାହାର କରିଅଛୁ, ତା' ମଧ୍ୟରୁ (ଆଲ୍ଲାଙ୍କ ଉଦ୍ଦେଶ୍ୟରେ) ବ୍ୟୟ

କର, ଏବଂ ସେଥିମଧ୍ୟରୁ ନିକୃଷ୍ଟଦ୍ରବ୍ୟ ଦେବାକୁ ଇଚ୍ଛା କର ନାହିଁ, ଯାହାକୁ ତୁମେ ନିଜେ ଗ୍ରହଣ କରିବାକୁ ଲଜ୍ଜା ବୋଧ କର, ଏବଂ ମନେରଖ - ଆଲ୍ଲା ସ୍ୱୟଂ ପର୍ଯ୍ୟାପ୍ତ ଓ ପ୍ରଶଂସନୀୟ ।" (ସୁରା-ଅଲ୍‌ବକରା - ୨୬୮)

"ଆଲ୍ଲାଙ୍କ ସନ୍ତୋଷ ବିଧାନ ନିମିତ୍ତ ନିଜ ଧନ ସଂପତ୍ତିର ଏକ ଉତ୍ତମ ଅଂଶକୁ ଅଲଗା କରିଦିଅ ।"

*(ସୁରା-ଅଲ୍-ମୁଜମିଲ୍, ୨ - ଆୟାତ-୨୧) ।*

ଅତଏବ, ଆଲ୍ଲାଙ୍କ ଉଦ୍ଦେଶ୍ୟରେ ଜାକାତ୍ ପ୍ରଦାନ କରିବା କଥାକୁ ଶ୍ରୀଶ୍ରୀଠାକୁର ଯୁଗୋପଯୋଗୀ ଭାବେ 'ଇଷ୍ଟଭୃତି' ନାମରେ ପ୍ରଚଳନ କରାଇଛନ୍ତି ।

ଶ୍ରୀଚୈତନ୍ୟ ଚରିତାମୃତରେ ଅଛି -

"ସତ୍‌ସଙ୍ଗ, କୃଷ୍ଣସେବା, ଭାଗବତ, ନାମ ।
ବ୍ରଜେବାସ, ଏଇ ପଞ୍ଚସାଧନ ପ୍ରଧାନ ।" (ମଧ୍ୟଲୀଳା)

ଏଠାରେ ମଧ୍ୟ ପଞ୍ଚନୀତିର ବିଧାନ ଦିଆଯାଇଛି । ବିଶେଷ ଭାବରେ 'କୃଷ୍ଣସେବା' କଥା ଉଲ୍ଲେଖ କରାଯାଇ ଇଷ୍ଟଭରଣର ଇଙ୍ଗିତ ଦିଆଯାଇଛି ।

ଶ୍ରୀଶ୍ରୀରାମକୃଷ୍ଣଦେବ କହିଛନ୍ତି - "ଆଉ ଦେଖ ଯେତେବେଳେ ଆସିବ ସେତେବେଳେ ହାତରେ ଗୋଟାଏ କିଛି ଆଣିବ । ନିଜେ କୁହେ ନାହିଁ - ଅଭିମାନ ହୁଏ । ଅଧର ସେନ୍‌କୁ ବି କୁହେ - ଏକ ପଇସାର କିଛି ନେଇ ଆସ । ଭଗବାନକୁ କୁହେ - ଏକ ପଇସାର ପାନ ଆଣ ।"

ସୁତରାଂ ଇଷ୍ଟଙ୍କୁ କିଛି ଦେବାର କଥା ଇଙ୍ଗିତାକାରରେ ଶ୍ରୀଶ୍ରୀରାମକୃଷ୍ଣ ଠାକୁର ମଧ୍ୟ କହିଛନ୍ତି ।

ଜେମ୍‌ସ କହିଛନ୍ତି, - "ମଣିଷ ଯଦି ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ସହକାରେ ନିତ୍ୟ ତପସ୍ୟା ପରାୟଣ ହୁଏ, ଶୁଭାର୍ଥରେ ଉତ୍ସର୍ଗ ପରାୟଣ ହୁଏ, ତେବେ ସେହି ତପଃଶକ୍ତି ଦ୍ୱାରା ତା' ଭିତରେ ଏପରି ଶକ୍ତି ସଞ୍ଚାରିତ ହୁଏ ଯେ ତାହାଫଳରେ ସେ ଅନାୟାସରେ ବହୁ ଆପଦ-ବିପଦ, ଝଡ-ଝଂଜା ଅତିକ୍ରମ

କରିପାରେ । ଯେଉଁମାନଙ୍କର ଏହି ତପଃ ସଂଜାତ ଶକ୍ତି ନାହିଁ, ସେମାନେ ଅସୁବିଧାରେ ପଡି ଧୂଳିସାତ୍ ହୋଇଥାନ୍ତି ।" (selected papers)

ବିଶ୍ୱକବି ରବୀନ୍ଦ୍ରନାଥ ସ୍ପଷ୍ଟଭାବେ ଯାହା କହିଛନ୍ତି, ତାହା ପ୍ରତ୍ୟେକଙ୍କର ପ୍ରଣିଧାନର ବିଷୟ । ସେ କହିଛନ୍ତି - "ସଂସାର ଭିତରେ ରହି ଅନ୍ତତଃ ଗୋଟିଏ ମଙ୍ଗଳଯଜ୍ଞ ଆରମ୍ଭ କରିଦିଅ । ସେହି ମଙ୍ଗଳ ଯଜ୍ଞପାଇଁ ତୁମ ଭଣ୍ଡାରର ଗୋଟିଏ ଅତି ଛୋଟ ଦରଜା ବି ଯଦି ଖୋଲି ରଖ ତାହାହେଲେ ଦେଖିବ, ଆଜି ଯିଏ ଅନଭ୍ୟାସ ଦ୍ୱାରରେ ଟିକିଏ ଟାଣିଦେଲେ ହିଁ ଆର୍ତ୍ତନାଦ କରି ଉଠୁଛି, ଯାହାର କଳଙ୍କିଲଗା ତାଲାରେ ଚାବି ଘୁରୁନି, କ୍ରମେ ହିଁ ତା' ଖୋଲିବା ଅତି ସହଜ ବ୍ୟାପାର ପରି ହୋଇ ଉଠିବ - ଗୋଟିଏ ଶୁଭ ଉପଲକ୍ଷ୍ୟରେ ତ୍ୟାଗ ଆରମ୍ଭ ହୋଇ ତାହା କ୍ରମଶ ହିଁ ବିସ୍ତୃତ ହୋଇ ଉଠିବ । ସଂସାରକୁ ତ ଆମେ ଅହୋରାତ୍ର ସମସ୍ତ ହିଁ ଦେଉ, ଭଗବାନଙ୍କୁ ବି କିଛି ଦିଅ - ପ୍ରତିଦିନ ଥରେ ଅନ୍ତତଃ ମୁଷ୍ଟି ଭିକ୍ଷା ଦିଅ - ସେଇ ନିସ୍ପୃହ ଭିକାରି ତାଙ୍କ ଭିକ୍ଷାପାତ୍ର ହସ୍ତରେ ହସହସ ମୁହଁରେ ପ୍ରତିଦିନ ହିଁ ଆମମାନଙ୍କ ଦ୍ୱାରକୁ ଆସୁଛନ୍ତି ଏବଂ ପ୍ରତିଦିନ ହିଁ ଫେରି ଯାଉଛନ୍ତି । ତାଙ୍କୁ ଯଦି ଏକମୁଠାକରି ଦାନ କରିବା ଆମେ ଅଭ୍ୟାସ କରୁ ତେବେ ସେହି ଦାନ ହିଁ ଆମର ସବୁଠାରୁ ବଡ଼ ହୋଇ ଉଠିବ । କ୍ରମେ ସେ ଆଉ ଆମର ମୁଠାରେ ଧରିବନି, କ୍ରମେ କିଛି ବି ଆଉ ହାତରେ ରଖି ପାରିବାନି । କିଂତୁ ତାଙ୍କୁ ଯେଉଁଟିକକ ଦେବା ସେଟିକକ ଗୋପନରେ ଦେବାକୁ ହେବ, ସେଥିପାଇଁ କୌଣସି ମଣିଷ ପାଖରେ ଏତେଟିକିଏ ଖ୍ୟାତି ଚାହିଁଲେ ଚଳିବ ନାହିଁ । କାହିଁକିନା ଲୋକଙ୍କୁ ଦେଖେଇ କରି ଦେବା, ସେଟିକକ ଏକ ରକମ ଦେବା ଅନ୍ୟ ରକମ କରି ହରଣ କରିବା । ସେହି ମହାଭିକ୍ଷୁକଙ୍କୁ ଯାହା ଦେବାକୁ ହେବ ତାହା ଅଳ୍ପ ହେଲେ ବି ନିଃଶବ୍ଦେ ଦେବା ଦରକାର । ତାହାର ହିସାବ ରଖିଲେ ହେବ ନାହିଁ, ତାହାର ରସିଦ ଚାହିଁଲେ ଚଳିବ ନାହିଁ । ଦିନ ଭିତରେ ଆମମାନଙ୍କର ଗୋଟିଏ କୌଣସି ଦାନ ଯେପରି ଏହିପ୍ରକାର ପରିପୂର୍ଣ୍ଣ ଦାନ ହୋଇପାରେ - ସେ ଯେପରି ସେହି ପରିପୂର୍ଣ୍ଣସ୍ୱରୂପ

ପାଖରେ ପରିପୂର୍ଣ୍ଣ ତ୍ୟାଗ ହୁଏ ଏବଂ ସଂସାର ଭିତରେ ଏଇଟିକକ ବ୍ୟାପାରରେ କେବଳ ତାଙ୍କ ସଙ୍ଗରେ ଏକାକୀ ମୋର ପ୍ରତ୍ୟହ ଏକଟି ଗୋପନ ସାକ୍ଷାତର ଅବକାଶ ଘଟେ ।" (ଶାନ୍ତିନିକେତନ : ରବିନ୍ଦ୍ରନାଥ) । ବିଶ୍ୱକବିଙ୍କ ଲେଖନୀରେ ଇଷ୍ଟଗୁରୁ ପୁରୁଷୋତ୍ତମ ପରମାତ୍ମା ପରମେଶ୍ୱରଙ୍କୁ ନିତ୍ୟ ଦେବାର କଥା ସ୍ପଷ୍ଟ ଭାବେ କୁହାଯାଇଛି ।

ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର କହୁଛନ୍ତି - "ଇଷ୍ଟଭୃତି ଯିଏ କରିବ ତା'ର ଉପକାର ହେବ, ଆଚାରଃ ପରମୋଧର୍ମଃ ।" ପୁଣି କହୁଛନ୍ତି, - "କେବଳ ଭାରତୀୟ ଆର୍ଯ୍ୟଗଣ ନୁହଁନ୍ତି, ଗ୍ରୀକ୍‌ଗଣ, ରୋମାନ୍‌ଗଣ ଏବଂ ପୃଥିବୀର ଅନ୍ୟାନ୍ୟ ସଭ୍ୟ ଜାତି ସମୂହ ବି ଦେବତାର୍ଥେ ନିତ୍ୟଦାନ କରୁଥିଲେ । ଏଇ ଦାନ ଓ ସେବା ଇସ୍‌ଲାମ ଧାର୍ମିକଗଣଙ୍କର ଥିଲା ନିତ୍ୟ ବ୍ରତ । ଜାକାତ୍ ଓ churchrate ଇସ୍‌ଲାମ୍ ଓ ଖ୍ରୀଷ୍ଟିୟାନ୍ ଜଗତରେ ଚିର ପ୍ରସିଦ୍ଧ ।"

## ସତ୍‌ସଙ୍ଗରେ ଇଷ୍ଟଭୃତିର ସଂକ୍ଷିପ୍ତ ଇତିହାସ

ଦୀକ୍ଷାଗ୍ରହଣ କରି ଶ୍ରୀଶ୍ରୀଠାକୁରଙ୍କୁ ଗୁରୁ ପଦରେ ଇଷ୍ଟରୂପେ ବରଣ କରି ପ୍ରତ୍ୟେକ ସତ୍‌ସଙ୍ଗୀ ଯଜନ, ଯାଜନ, ଇଷ୍ଟଭୃତି କରି ଚାଲନ୍ତି । କିନ୍ତୁ ଇଷ୍ଟଙ୍କ ପାଇଁ ଦୈନନ୍ଦିନ ବାସ୍ତବରେ ଯଦି କିଛି କରିବା ନରୁହେ, ତା'ହେଲେ ଇଷ୍ଟଙ୍କ ସହ ସମ୍ପର୍କ ନିବିଡ ହୁଏନା । ଏଣୁ ସତ୍‌ସଙ୍ଗୀଗଣ ଇଷ୍ଟଭୃତି ଅବଶ୍ୟ କରିବା ଦରକାର ବୋଲି ଶ୍ରୀଶ୍ରୀଠାକୁର କୁହନ୍ତି । ୧୯୩୮ ମସିହା ଶେଷାର୍ଦ୍ଧରେ ଏହାର ପ୍ରଚଳନ ହୁଏ । ଏହା ପୂର୍ବରୁ ୧୯୩୭ ମସିହା ଶେଷାର୍ଦ୍ଧରେ 'ସ୍ୱସ୍ତ୍ୟୟନୀ' ବ୍ରତର ବିଧାନ ଶ୍ରୀଶ୍ରୀଠାକୁର ଦିଅନ୍ତି ଏବଂ କ୍ରମେକ୍ରମେ ସ୍ୱସ୍ତ୍ୟୟନୀର ପାଞ୍ଚଟି ନୀତି ସମ୍ବନ୍ଧରେ ମୁଖେ-ମୁଖେ ଯାଜନର ଢେଉ ବହିବାକୁ ଲାଗେ ଏବଂ ସେ ସମୟରେ 'ସତ୍‌ସଙ୍ଗୀ' ପତ୍ରିକା ଓ ପୁସ୍ତକାଦି ମାଧ୍ୟମରେ ବି ଏହା ପ୍ରଚାର ହୁଏ ।

"ଋତ୍ୱିକ ସଂଘର ଇତିହାସ" ଶୀର୍ଷକ ପ୍ରବନ୍ଧରେ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଦାସ ଯାହା ଲେଖିଛନ୍ତି, ଶ୍ରୀଯୁକ୍ତ କୁମାର କୃଷ୍ଣ ଭଟ୍ଟାଚାର୍ଯ୍ୟ ତାଙ୍କର 'ମହାମାନବର ସାଗରତୀରେ' ପୁସ୍ତକରେ ଉଲ୍ଲେଖ କରିଛନ୍ତି । ସେଥିରୁ କିଛି ଉଦ୍ଧୃତି ନିମ୍ନରେ ଦିଆଗଲା -

"କିନ୍ତୁ ଇଷ୍ଟଙ୍କ ପାଇଁ ଦୈନନ୍ଦିନ ବାସ୍ତବ କରଣ ଯଦି କିଛି ନ ରହେ, ତା ହେଲେ ଇଷ୍ଟଙ୍କ ସହ ସମ୍ପର୍କ ଗଭୀର ହୋଇଉଠେନା । ତେଣୁ ପରମପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କର ଇଷ୍ଟପ୍ରାଣ-ଗଣ-ସଂସ୍କୃତି ଉନ୍ମାଦନାକୁ ପୋଷଣ ଓ ପରିବର୍ଦ୍ଧନରେ ବାସ୍ତବରେ ପରିଣତ କରି କୃତାର୍ଥ ହେବାର ଆଗ୍ରହରେ ତାଙ୍କର ସ୍ୱାଧୀନ ଇଚ୍ଛା ମତେ ବ୍ୟବହାର କାମନାରେ ତାଙ୍କ ନିକଟକୁ ଅର୍ଘ୍ୟ ପଠାଇବାପାଇଁ ସଂକଳ୍ପ ଗ୍ରହଣ କରାଯାଏ । ନିଜେ ଜଳ ଗ୍ରହଣର ପୂର୍ବେ ନିଜ ଆହାର୍ଯ୍ୟାନୁରୂପ ବା ତଦନୁକଳ୍ପୀ ତାଙ୍କୁ ନିବେଦନ କରି ରଖି ପ୍ରତି ମାସରେ ସେଇ ସଂରକ୍ଷିତ ଅର୍ଘ୍ୟ ତାଙ୍କ ପାଖକୁ ପଠାଇବାର ବିଧାନ ଦିଆଯାଏ ।" ଯେପରି ସବୁଦିଗର ଗୋଟାଏ ସୁଷ୍ଠୁ ସାମଞ୍ଜସ୍ୟ ହୁଏ ଏବଂ ପ୍ରତ୍ୟେକ ହିଁ ଇଷ୍ଟାନୁରାଗ ଓ ଅର୍ଜନ ପଟୁତାର ଉଦ୍‌ବୋଧନରେ ସର୍ବତୋଭାବରେ ସାର୍ଥକ ହୁଅନ୍ତି, ସେଇ ଉଦ୍ଦେଶ୍ୟରେ ହିଁ ନିତ୍ୟପଞ୍ଚମହାଯଜ୍ଞର ଯୁଗୋପଯୋଗୀ ବିଧାନ ଦେଲେ ଶ୍ରୀଶ୍ରୀଠାକୁର ଇଷ୍ଟଭୃତିର ଭିତରଦେଇ ଏବଂ ଏଇଟା ପ୍ରତ୍ୟେକଟି ସତ୍‌ସଙ୍ଗୀର ଅବଶ୍ୟ କରଣୀୟ ବୋଲି ନିର୍ଦ୍ଧାରିତ ହେଲା । ପ୍ରଥମେ ଅନେକ ହିଁ ଏହାର ସମ୍ଭାବ୍ୟତା ସମ୍ବନ୍ଧରେ ପ୍ରଶ୍ନଉଠାଇଲେ । କିନ୍ତୁ ଶ୍ରୀଶ୍ରୀଠାକୁର ଆମର ପ୍ରତ୍ୟେକଟି 'ନା'କୁ 'ହଁ'ରେ ପର୍ଯ୍ୟବସିତ କରି ଛାଡନ୍ତି ତାଙ୍କର ଅମାନୁଷୀ ପ୍ରେରଣା, ପ୍ରବୋଧନା, ପ୍ରଚେଷ୍ଟା ଓ ପ୍ରତ୍ୟୟର ଭିତର-ଦେଇ । ଏହା ପ୍ରବର୍ତ୍ତିତ ହେଲା ୧୯୩୮ ସାଲର ଅକ୍ଟୋବର ମାସରେ । ସେତେବେଳେ ଦ୍ୱିତୀୟ ଋତ୍ୱିକ ଅଧିବେଶନ, ଏଇ ଅଧିବେଶନଠାରୁ ଆରମ୍ଭ କରି ଅନ୍ୟ କେତେକ ଅଧିବେଶନରେ ଇଷ୍ଟଭୃତି ସମ୍ବନ୍ଧରେ ଘଣ୍ଟା ପରେ ଘଣ୍ଟା, ଦିନ ପରେ ଦିନ ଗଭୀର, ବ୍ୟାପକ ଓ ବିଶଦ, ଆଲୋଚନା ହୁଏ । ଇଷ୍ଟଭୃତି ପ୍ରବର୍ତ୍ତନ ହେବା ପରେ କିଛି ମାସ ପର୍ଯ୍ୟନ୍ତ ଶ୍ରୀଶ୍ରୀଠାକୁର ବି ଏହାର

କାର୍ଯ୍ୟକାରିତା ଓ ଉପଯୋଗିତା ସମ୍ବନ୍ଧରେ ସଦାସର୍ବଦା ଆଳାପ ଆଲୋଚନା କରନ୍ତି । ସତ୍‌ସଙ୍ଗୀ-ପତ୍ରିକା, ଚିଠିପତ୍ର ଓ ପୁସ୍ତକାଦିର ଭିତର ଦେଇ ମଧ୍ୟ ଇଷ୍ଟଭୃତି ସମ୍ବନ୍ଧରେ ଯାଜନ ଚାଲେ । ପ୍ରଥମରୁ ହିଁ ଶ୍ରୀକେଷ୍ଟଭାଇ ସତ୍‌ସଙ୍ଗୀ ଓ କର୍ମୀମାନଙ୍କୁ ନେଇ କ୍ରମାଗତ ଇଷ୍ଟଭୃତି ସମ୍ବନ୍ଧରେ ଆଳାପ-ଆଲୋଚନା କରନ୍ତି । ସମବେତ ପ୍ରଚେଷ୍ଟାର ଭିତରେ ଦେଇ ଇଷ୍ଟଭୃତି ସମ୍ବନ୍ଧରେ ସତ୍‌ସଙ୍ଗୀମାନଙ୍କ ଭିତରେ ଗୋଟାଏ ତୀବ୍ର ଝୁଙ୍କ୍ ସୃଷ୍ଟି ହୁଏ । ପୂର୍ବ ଦୀକ୍ଷିତ ସତ୍‌ସଙ୍ଗୀଗଣ ଦଳେ ଦଳେ ଇଷ୍ଟଭୃତି ଗ୍ରହଣ କରିବା ଆରମ୍ଭ କରିଦେଲେ । ଏଇ ସମୟଠାରୁ ଦୀକ୍ଷାପତ୍ରର ନିମ୍ନଭାଗରେ ଇଷ୍ଟଭୃତି ଗ୍ରହଣ ବାକ୍ୟ ସଂଯୋଜିତ ହୁଏ ଏବଂ ସ୍ଥିରୀକୃତ ହୁଏ ଯେ, ଇଷ୍ଟଭୃତି ଗ୍ରହଣର ସ୍ୱାକ୍ଷର ନନେଇ କାହାକୁ ବି ଦୀକ୍ଷା ଦିଆଯାଇ ପାରିବ ନାହିଁ । ଋତ୍ୱିକଗଣ ମନେକରନ୍ତି ଯେ ଏହା ଦ୍ୱାରା ଦୀକ୍ଷାଦାନ ଦୂରୁହ ହୋଇଉଠିବ, କିଂତୁ କର୍ମକ୍ଷେତ୍ରକୁ ଯାଇ ସେମାନେ ଦେଖିବାକୁ ପାଇଲେ ଯେ, ଇଷ୍ଟଭୃତିର କଥା କହିଲେ ହିଁ ସମସ୍ତଙ୍କର ମନକୁ ଛୁଇଁଯାଏ ଏବଂ ଅଧିକ ପରିମାଣରେ ଲୋକ ହିଁ ଦୀକ୍ଷାର ସଙ୍ଗେ ସଙ୍ଗେ ଇଷ୍ଟଭୃତି ପାଳନ କରିବାକୁ ସ୍ଥିର କରି ନିଅନ୍ତି । ଅବଶ୍ୟ ଅଭ୍ୟାସ ପକ୍କା ହେବାପାଇଁ ସମୟନିଏ, ସେ ଅଲଗା କଥା । ଇଷ୍ଟଭୃତି ବିଧାନରେ ଅଛି ୩୦ ଦିନର ଦିନ ଇଷ୍ଟଭୃତି ଇଷ୍ଟସକାଶେ ପଠାଇ, ଦୁଇଜଣ ଗୁରୁ ଭାଇଙ୍କୁ ଦୁଇଟି ଭୋଜ୍ୟ ଏବଂ ଦୁଃସ୍ଥ ପରିବେଶର ସେବାପାଇଁ ଭୂତଭୋଜ୍ୟ ଦେବାକଥା ଅନେକ ହିଁ ନୈଷ୍ଠିକ ଭାବରେ ଏହାର ପ୍ରତ୍ୟେକଟି ବିଧି ପାଳନ କରି ଚାଲିଥାନ୍ତି । ଫଳରେ ଦେଖାଯାଏ ସଂଘଭ୍ରାତାମାନଙ୍କ ମଧ୍ୟରେ ସୌଭ୍ରାତ୍ରର ବନ୍ଧନ ଆହୁରି ଦୃଢ଼ ହୋଇଉଠେ ଏବଂ ବହୁଦୁଃସ୍ଥ ବ୍ୟକ୍ତି ଉପକୃତ ହୁଅନ୍ତି । ଏହି ବ୍ୟାପାରଟି ଧୀରେଧୀରେ ବୃହତ୍ତର ପରିବେଶର ବି ଦୃଷ୍ଟି ଆକର୍ଷଣ କରେ । ଇଷ୍ଟଭୃତିର ଭିତରଦେଇ ଶ୍ରୀଶ୍ରୀଠାକୁର କେତେ ପରିମାଣରେ ସମାଜ ସେବାର ବ୍ୟବସ୍ଥା କରି ରଖିଛନ୍ତି ତାହା ଅନେକେ ବୁଝିପାରନ୍ତି । ଆଉ, ଏହି ସେବାର ମୂଳରେ ଅଛି ଶ୍ରଦ୍ଧା ଓ ପ୍ରୀତି, ଦାନର ଅହଂକାର ଏଥିରେ ନାହିଁ ।

# ଆଚାର୍ଯ୍ୟ ଭୃତି

ଇଷ୍ଟ ହେଉଛନ୍ତି ପରମ ଆଚାର୍ଯ୍ୟ ପୁରୁଷୋତ୍ତମ, ଆଚାର୍ଯ୍ୟରୂପେ, ଗୁରୁ ରୂପେ ନରତନୁ ଧାରଣ କରି ସେହି ଅନନ୍ତ, ଅସୀମ, ନିରାକାର, ନିର୍ଗୁଣ, ଈଶ୍ୱର ଧରାଧାମରେ ଅବତୀର୍ଣ୍ଣ ହୁଅନ୍ତି ଯୁଗେ ଯୁଗେ ଯୁଗ ପ୍ରୟୋଜନରେ । ତାଙ୍କର ନରଲୀଳା ପରେ ସେ ତାଙ୍କର ସ୍ଥୂଳ-ତନୁକୁ ଆତ୍ମଆଳକୁ ନେଇଯାଆନ୍ତି । ତାଙ୍କ ସ୍ଥୂଳତନୁର ଅବର୍ତ୍ତମାନରେ ତନ୍ନିଷ୍ଠ, ତଁତ୍ତପା, ଆଚାର୍ଯ୍ୟହିଁ ସେହି ପୁରୁଷୋତ୍ତମଙ୍କୁ ଧରାଧାମରେ ପ୍ରତିଷ୍ଠା କରିଚାଲନ୍ତି ଏବଂ ଏହି ଧାରା ଅବ୍ୟାହତ ରୁହେ । ଇଷ୍ଟ-ପ୍ରତିଭୂ, ଇଷ୍ଟ-ବାହୀ ଯିଏ, ସେ ହେଉଛନ୍ତି ବ୍ରହ୍ମମାର୍ଗ ପ୍ରଦର୍ଶକ । ଏଣୁ, ପ୍ରତ୍ୟହ ଇଷ୍ଟଭୃତି ନିବେଦନ କରିବାପରେ ଯଥାଶକ୍ତି 'ଆଚାର୍ଯ୍ୟଭୃତି' ନିବେଦନ କରିବା ଉଚିତ୍ । ଏହି ଅର୍ଘ୍ୟ ଯେପରି ଇଷ୍ଟଭୃତି ଅର୍ଘ୍ୟଠାରୁ ଅଧିକ ନ ହୁଏ । କିନ୍ତୁ 'ଇଷ୍ଟଭୃତି' ହିଁ ମୂଳକଥା ।

ଶ୍ରୀ ଶ୍ରୀ ଠାକୁରଙ୍କ ବାଣୀ ମଧ୍ୟରେ ଦେଖୁ -

"ଇଷ୍ଟରାଗେ ଅଟୁଟ ଯିଏ
ସାଧନ-ଆଚାର-ଶୀଳବାନ୍,
ଆଚାର୍ଯ୍ୟଗୁରୁ ସେ ହିଁ ଜାଣ
ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାବାନ୍ ।"୬୪

ଅତଏବ ଆଚାର୍ଯ୍ୟ ଦେବଙ୍କ ପ୍ରତି ଭଲପାଇବା ଓ କୃତଜ୍ଞତା ହେତୁ ଆଚାର୍ଯ୍ୟ ଭୃତି ଅବଶ୍ୟ କରଣୀୟ । କିନ୍ତୁ ଏହା ପୃଥକ୍ ଭାବେ ଆଚାର୍ଯ୍ୟଦେବଙ୍କୁ ଦିଆଯିବ ନାହିଁ - ଏହା ଇଷ୍ଟଭୃତି ସହିତ ଇଷ୍ଟଙ୍କ ସ୍ଥାନକୁ, ଅର୍ଥାତ୍ 'ସତ୍‌ସଙ୍ଗ ଫିଲାନ୍‌ଥ୍ରୋପି'କୁ ପଠାଯିବ ।

# ପିତୃଭୃତି, ମାତୃଭୃତି

ଆମମାନଙ୍କ ଜନ୍ମ ଓ ଜୀବନ ପିତାମାତାଙ୍କ ଦାନ । ଆମର ଜୈବୀ ସଂସ୍ଥିତି ସମ୍ଭବ ହୋଇଛି - ପିତାମାତାଙ୍କ ଦୟାରୁ । ପିତା-ମାତାଙ୍କ ବିନା ଜୀବନ ପାଇବା, ଅର୍ଥାତ୍ ଦୁନିଆର ଆଲୋକ ଦେଖିବା କାହାର ପକ୍ଷରେ ସମ୍ଭବ ନୁହେଁ । ଅତଏବ ଆମେ ପିତାମାତାଙ୍କ ପ୍ରତି ସତତ କୃତଜ୍ଞ । ଇଷ୍ଟଙ୍କ ଉଦ୍ଦେଶ୍ୟରେ ପ୍ରୀତିଅର୍ଘ୍ୟ ନିତ୍ୟ ନିବେଦନ କରିବାଭଳି ନିତ୍ୟ ପିତା-ମାତାଙ୍କ ଉଦ୍ଦେଶ୍ୟରେ ପିତୃ-ମାତୃଭୃତି ନିବେଦନ କରିବା ଉଚିତ୍ । ଏହା ମଧ୍ୟ କୃତଜ୍ଞତାର ନିଦର୍ଶନ । କେବଳ କଥାରେ କୃତଜ୍ଞତା ନୁହେଁ, ବାସ୍ତବରେ କିଛି କରିବାକୁ ହୁଏ ।

ଶ୍ରୀଶ୍ରୀଠାକୁର କହିଛନ୍ତି - "ନିତ୍ୟ ଇଷ୍ଟଭୃତି କରିବାକୁ ହୁଏ, ସେଥିରେ ମଣିଷ concentric (ସୁକେନ୍ଦ୍ରିକ) ହୁଏ । concentric (ସୁକେନ୍ଦ୍ରିକ) ନ ହେଲେ ମଣିଷର will-power (ଇଚ୍ଛାଶକ୍ତି) ବଢ଼େନି । will-power (ଇଚ୍ଛାଶକ୍ତି) ନ ବଢ଼ିଲେ activity (କର୍ମ) ବଢ଼େନି । ପିଲାପିଲିମାନଙ୍କୁ ପିତୃଭୃତି, ମାତୃଭୃତି ଧରାଇଦେବାକୁ ହୁଏ । ବାପା ଦେଖିବେ ଯେପରି ମାଆଙ୍କୁ ଦିଏ, ମା' ଦେଖିବେ ଯେପରି ବାପାଙ୍କୁ ଦିଏ । କାହାରି ପାଖରୁ ପାଇଲେ ଯେ ଟାଣ ହୁଏ, ତାହା କିନ୍ତୁ ନୁହେଁ । ବରଂ ଯାହାକୁ ଦିଆଯାଏ, ତା'ଉପରେ ଟାଣ ହୁଏ ।"[୬୫]

"ଇଷ୍ଟଭୃତି କରିବାଭଳି ମୁଁ କୁହେ ପ୍ରତିପରିବାରରେ ପିଲା ପିଲିଙ୍କୁ ନେଇ ପିତୃଭୃତି, ମାତୃଭୃତି କରାଇବା କଥା । ଏହିପରି କରି ପିଲା-ପିଲିଙ୍କ ମଧ୍ୟରେ auto-initiative activezeal (ସ୍ୱତଃ ପ୍ରଣୋଦିତ ସକ୍ରିୟ ଉତ୍ସାହ) ଜଗେଇ ଦେବାକୁ ହୁଏ । ଯାହାଦ୍ୱାରା ସେମାନଙ୍କର ମା'-ବାପାଙ୍କୁ daily (ପ୍ରତ୍ୟହ) କିଛି ନା କିଛି ନଦେଇ ଭଲ ଲାଗେନା । ମାଆର ଦେଖିବା ଉଚିତ୍ ଯାହାଦ୍ୱାରା ବାପାଙ୍କୁ ଦିଅନ୍ତି, ବାପାଙ୍କ ଦେଖିବା ଉଚିତ୍ ଯାହାଦ୍ୱାରା ମାଆଙ୍କୁ ଦିଅନ୍ତି ।"[୬୬]

ଇଷ୍ଟଭୃତି କରିବା ଭିତର ଦେଇ ଯେଉଁ ପିତୃ-ଯଜ୍ଞ ସଂସାଧିତ ହୋଇଥାଏ, ପିତୃ-ମାତୃଭୃତି ଏହାର ଆଙ୍ଗିକ । ମନେରଖିବାକୁ ହେବ ଯେ ଇଷ୍ଟଭୃତି ଅର୍ଘ୍ୟ ପରିମାଣଠାରୁ ଏହା କମ୍ ହେବ ଏବଂ ପ୍ରତ୍ୟୁଷରେ ନିତ୍ୟ ଇଷ୍ଟଭୃତି କରିସାରି ପିତୃଭୃତି, ମାତୃଭୃତି କରିବାକୁ ହେବ । କିନ୍ତୁ ଇଷ୍ଟଭୃତି ହିଁ ଅସଲ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ଭିତରେ ଦେଖୁଁ -

"ମାତା-ପିତା ଶ୍ରେଷ୍ଠଜନେ
ଶ୍ରଦ୍ଧାଭକ୍ତି ଯାହାବି ରଖନା
ଇଷ୍ଟାନୁଗ ନହେଲେ ତାହା
ଆଣିବ ନାହିଁ ସଂବର୍ଦ୍ଧନା ।"

## ଯଜନ, ଯାଜନ, ଇଷ୍ଟଭୃତି

'ଇଷ୍ଟଭୃତି' ପ୍ରସଙ୍ଗରେ ଆଲୋଚନା କଲାବେଳେ ଯଜନ ଓ ଯାଜନ ସଂପର୍କରେ ସଂକ୍ଷିପ୍ତ ଆଲୋଚନା ନ କରିଲେ ବା ଏହି ତିନୋଟି ଯେ ଅଙ୍ଗାଙ୍ଗୀଭାବେ ଜଡିତ ସେହି ବିଷୟରେ ସଂକ୍ଷିପ୍ତ ଧାରଣା ନଦେଲେ ବିଷୟଟି ଅସଂପୂର୍ଣ୍ଣ ରହିଯିବ ।

ଯଜନ-ଯାଜନ-ଇଷ୍ଟଭୃତି ତିନୋଟି ପୃଥକ ପୃଥକ ନାମ ହେଲେ ହେଁ କୌଣସିଟି ଅପର ଦୁଇଟିଠାରୁ ପୃଥକ ନୁହେଁ । ସହଜ ଭାବରେ କହିବାକୁ ଗଲେ ଯଜନ-ଯାଜନ-ଇଷ୍ଟଭୃତି ପାଳନ କରିବା ହେଉଛି - ଭାବିବା, କହିବା ଓ କରିବା ଭିତରେ ସମନ୍ୱୟ ସାଧନ କରି ଚଳିବା । ଶ୍ରୀଶ୍ରୀଠାକୁର ଉଡାଜାହାଜ ଉଦାହରଣ ଦେଇ କହିଛନ୍ତି - ଯଜନ ଓ ଯାଜନ ଦୁଇଟି ଡେଣା ଏବଂ ଇଷ୍ଟଭୃତି ଯେପରି ମୋଟିଭ୍‌ଫୋର୍ସ ବା ଚାଳକ ଶକ୍ତି । କୌଣସିଟିକୁ ବାଦ ଦେଇ ଚାଲିବାର ଉପାୟ ନାହିଁ । ସେଥିପାଇଁ ଶ୍ରୀଶ୍ରୀଠାକୁର ପ୍ରତ୍ୟେକଙ୍କୁ ନିତ୍ୟ ନିଷ୍ଠାର ସହିତ ଯଜନ-ଯାଜନ-ଇଷ୍ଟଭୃତି କଣ୍ଠାଏ କଣ୍ଠାଏ

ପାଳନ କରିବାର ନିର୍ଦ୍ଦେଶ ଦେଇଛନ୍ତି । ଏହି ତ୍ରୟୀବ୍ରତ ପାଳନ କରିବା ଫଳରେ ସମସ୍ତଙ୍କର ଅନ୍ତର୍ଦୃଷ୍ଟି ବିକଶିତ ହୁଏ, ଯେକୌଣସି ବିପଦ-ଆପଦ ପୂର୍ବରୁ ସାବଧାନ ହେବାର ବୁଦ୍ଧି ଆସେ ଏବଂ ମନୁଷ୍ୟ ଜୀବନର ମହାନ୍ ବିବର୍ତ୍ତନ ସାଧିତ ହୁଏ । ସ୍ୱତଃ ସ୍ୱେଚ୍ଛ ଆଗ୍ରହରେ ନିତ୍ୟ ତପସ୍ୟା ପରାୟଣ ହେବା ଫଳରେ ତା'ଭିତରେ ଏପରି ଶକ୍ତି ସଞ୍ଚିତ ହୁଏ, ଯାହାଫଳରେ ସେ ବହୁ ବହୁ ବିପଦ-ଆପଦ ଓ ଦୁର୍ଦ୍ଦୈବକୁ ଅତିକ୍ରମ କରିପାରେ ।

ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର ଆଲୋଚନା ପ୍ରସଙ୍ଗରେ ସଂକ୍ଷେପରେ କହିଛନ୍ତି, "ତିନିଟି ଜିନିଷ ଆମମାନଙ୍କର ବିଶେଷ ଭାବେ କରଣୀୟ । ପ୍ରଥମ ହେଲା ଯଜନ, ଅର୍ଥାତ୍ ନାମ-ଧ୍ୟାନ, ପୂଜା-ପାଠ, ଆତ୍ମବିଚାର, ଆତ୍ମବିଶ୍ଳେଷଣ ଇତ୍ୟାଦି ଭିତର ଦେଇ ନିଜର ମନୋଜଗତକୁ ଇଷ୍ଟଙ୍କ ଛନ୍ଦାନୁବର୍ତ୍ତୀ କରି ତୋଳିବା । ଦ୍ୱିତୀୟଟି ହେଲା ଯାଜନ । ଅର୍ଥାତ୍, ପରିବେଶକୁ ଇଷ୍ଟଙ୍କ ଭାବରେ ଭାବିତ କରି ତାଙ୍କଠାରେ ଯୁକ୍ତ କରି ତୋଳିବା । ପରିବେଶକୁ ବାଦ୍ ଦେଇ ଆମେ କେହି ଏକୁଟିଆ ବଂଚି ପାରିବାନି । ତେଣୁ ପରିବେଶକୁ ଗଢ଼ି ତୋଳିବା ପାଇଁ ସକ୍ରିୟ ପ୍ରଚେଷ୍ଟା ଦରକାର । ଯାଜନ ତେଣୁ ଆମମାନଙ୍କର ନିତ୍ୟ କରଣୀୟ । ଆମେ ପ୍ରତ୍ୟେକଙ୍କୁ Fisher of man (ମଣିଷ ଧରାଳି) ହେବାକୁ ପଡିବ । ଆଉ, ଦରକାର ଇଷ୍ଟଙ୍କ ଭରଣ ଓ ପୋଷଣ । ଏହା ଭିତର ଦେଇ ତାଙ୍କ ଉପରେ ଟାଣ ଗଜାଏ ଏବଂ ସେହିଟାଣ ଆମଜୀବନର ନିୟାମକ ହୋଇଉଠେ । ଏହାର କୌଣସିଟି ବାଦ ଦେଲେ ଚଳିବ ନାହିଁ ।" ଏହି ତିନୋଟିର ବାସ୍ତବାୟନ ଫଳରେ ଶ୍ରେୟ ବା ଇଷ୍ଟଙ୍କ ପ୍ରତି ଭଲପାଇବା ବୃଦ୍ଧି ହୁଏ ଏବଂ ଭଲପାଇବାରୁ ଭକ୍ତି ଓ ଭକ୍ତିରୁ ପ୍ରେମ ଆସେ । ତାଙ୍କ ପ୍ରତି ଅକାଟ୍ୟ ଟାଣ ବା ଭଲପାଇବା ହେଲେ ସମସ୍ତ ଜୀବ-ଜଗତ ପ୍ରତି ଆତ୍ମବୋଧ ଉପଲବ୍ଧି ହୁଏ । ସବୁ ଯେପରି ସେହି ଏକଶକ୍ତିର ହିଁ ବିଭିନ୍ନ ପ୍ରକାଶ, ଅବସ୍ଥାନଗତ ତାରତମ୍ୟ ସାମୟିକ ପ୍ରକାର ଭେଦ ମାତ୍ର । ଏହି ବୋଧରୁ ସମଗ୍ର ଜଗତପ୍ରତି ପ୍ରେମ-

ପ୍ରୀତି ଜାଗେ । 'ଯତ୍ର ଯତ୍ର ନେତ୍ର ପଡେ, ତତ୍ର ତତ୍ର ଇଷ୍ଟସ୍ଫୁରେ' - ଏହି ଭାବ ହେଉଛି ସାଧନ ଜଗତର ଚରମ ସୋପାନ ।

ଆର୍ଯ୍ୟମାନଙ୍କର ଷଟ୍‌କର୍ମ ବିଷୟ ଆମେ ଜାଣିଛେ । ଅର୍ଥାତ୍, ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ ଓ ପ୍ରତିଗ୍ରହ । ଏହା ନିତ୍ୟପାଳନ ନ କରିଲେ ଆର୍ଯ୍ୟାଚାରରୁ ବିଚ୍ୟୁତି ହେବାକୁ ହୁଏ । ଶ୍ରୀଶ୍ରୀଠାକୁର ଏହି ଷଟ୍ କର୍ମକୁ ଯଜନ-ଯାଜନ-ଇଷ୍ଟଭୃତି-ତିନିଟି ଭିତରେ ରଖିଛନ୍ତି । ଯଜନ ମଧ୍ୟରେ ଅଛି, ଯଜନ ଓ ଅଧ୍ୟୟନ । ଯାଜନ ଭିତରେ ଅଛି, ଯାଜନ ଓ ଅଧ୍ୟାପନା, ଏବଂ ଦାନ ଓ ପ୍ରତିଗ୍ରହକୁ ନେଇ ଇଷ୍ଟଭୃତି । ଶ୍ରୀଶ୍ରୀଠାକୁର ଯୁଗୋପଯୋଗୀ କରି ଏହାର ବିଧାନ ପ୍ରଦାନ କରିଛନ୍ତି, ସର୍ବକାଳର, ସବୁସ୍ଥାନର ତଥା ସକଳ ଜାତିର ମାନବ ସମାଜ ପାଇଁ । ଏଠାରେ ମନେ ରଖିବାକୁ ହେବ ଯେ ଏହି ଅଭୟ ବିଧାନ ଯଜନ-ଯାଜନ-ଇଷ୍ଟଭୃତି ହେବା ଦରକାର ଇଷ୍ଟକେନ୍ଦ୍ରିକ । ଅର୍ଥାତ୍ ଇଷ୍ଟଙ୍କ ଯଜନ, ଇଷ୍ଟଙ୍କ ଯାଜନ ଏବଂ ଇଷ୍ଟଙ୍କର ଭରଣ-ପୋଷଣ (ଭୃତି) । ତେବେ ହିଁ ଜୀବନ ହେବ ନିରାପଦ, ନିର୍ଭୟ ଓ ନିତ୍ୟାନନ୍ଦ । ଆଉ, ଏହି ଇଷ୍ଟ ହେଉଛନ୍ତି ମଙ୍ଗଳର ଜୀବନ୍ତ-ବିଗ୍ରହ, ବୈଶିଷ୍ଟ୍ୟପାଳୀ, ଆପୂରୟମାଣ, ପୁରୁଷୋତ୍ତମ ।

ଯଜନ ଓ ଯାଜନ - ଏହି ଦୁଇଟି ଶବ୍ଦର ବ୍ୟୁତ୍ପତ୍ତି 'ଯଜ୍' ଧାତୁରୁ । ଏହାର ଅର୍ଥ - ଦାନ, ପୂଜା, ସଂଗତିକରଣ ଇତ୍ୟାଦି । ସାଧନ-ଭଜନ, ପାଠ-ପ୍ରବଚନ, ସେବା-ଉପକାର, ଦାନ, ଯଜ୍ଞ ଇତ୍ୟାଦି ଯାହାକିଛି କରଣୀୟ, ତାହା ଇଷ୍ଟଙ୍କ ପ୍ରୀତିପାଇଁ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଦେଖୁଁ -

"ପ୍ରେଷ୍ଠ ଚିନ୍ତା ତାଙ୍କ ଚାହିବାରେ
ପ୍ରାଣ ଭରି ଯା'ର ଥାଏ
ପୂରଣ ପ୍ରୟାସ ଆବେଗ ନେଇ
ଧ୍ୟାନୀ ହିଁ ତାକୁ କୁହେ ।"[୨୬]

ଦୀକ୍ଷା ଗ୍ରହଣ ପରେ ନିୟତ ଇଷ୍ଟକେନ୍ଦ୍ରିକ ଆଚରଣ ଓ ଅନୁଶୀଳନ ମାଧ୍ୟମରେ ନିଜକୁ ଇଷ୍ଟଭୂତ କରି ତୋଳିବା । ଶ୍ରୀଶ୍ରୀଠାକୁରଙ୍କ ଭାଷାରେ - 'ଯଜନ ହେଲା to work out the order of the master, the love-lord (ପ୍ରଭୁ ଯିଏ, ପ୍ରିୟ ପରମ ଯିଏ, ତାଙ୍କ ଆଦେଶ ବାସ୍ତବରେ ମୂର୍ତ୍ତ କରି ତୋଳିବା) ।' ନିତ୍ୟ ନାମ-ଧ୍ୟାନ କରିବା, ଇଷ୍ଟଭାବରେ ଭାବିତ ହୋଇ ମନୁଷ୍ୟର ସୁଖ-ଶାନ୍ତି-ମଙ୍ଗଳ ଚିନ୍ତା କରିବା, ଶ୍ରୀଶ୍ରୀଠାକୁରଙ୍କ ଗ୍ରନ୍ଥାଦି ପାଠ, ତଥା ଅନ୍ୟାନ୍ୟ ସଦ୍‌ଗ୍ରନ୍ଥାଦି ପାଠକରିବା ଯାହାକି ଇଷ୍ଟପ୍ରତିଷ୍ଠାରେ ସହାୟକ । ଏହି ଗ୍ରନ୍ଥାଦିପାଠକୁ ସ୍ୱାଧ୍ୟାୟ କୁହାଯାଇଥାଏ । ଭଜନ, ବ୍ରତ, ପୂଜା, ପ୍ରାର୍ଥନା, ପ୍ରାୟଶ୍ଚିତ, ଆତ୍ମସମୀକ୍ଷା, ଆତ୍ମବିଶ୍ଳେଷଣ ଇତ୍ୟାଦି ଯଜନର ଅନ୍ତର୍ଭୁକ୍ତ । ସଦ୍-ଗ୍ରନ୍ଥାଦି ଅଧ୍ୟୟନର ଅର୍ଥ କେବଳ ମୌଖିକ ପଠନ ନୁହେଁ, ଅଧିଗମନ ବା ଆୟତ୍ତ କରିବା ପଥରେ ଚଳିବା ।

'ନାମ' ଓ 'ନାମୀ' ଅଭିନ୍ନ । 'ନାମ'ର ଗନ୍ତବ୍ୟ 'ନାମୀ' । ନାମ କରୁ କରୁ ନାମୀଙ୍କଠାରେ ପହଁଞ୍ଚିବାକୁ ହୁଏ । 'ନାମ' ହେଉଛି 'ନାମୀ'ଙ୍କର ସୂକ୍ଷ୍ମରୂପ । 'ପାତଞ୍ଜଳ'ରେ ଅଛି - 'ତଜ୍ଜପସ୍ତଦର୍ଥ ଭାବନଂଚ' - ଜପ ମଧ୍ୟରେ ଅଛି ମାନସ ଆବୃତ୍ତି । ନାମ, ନାମୀ, ପାରିପାର୍ଶ୍ୱିକ ଜଗତ ଓ ଅହଂ (ମୁଁ) - ଏହି ସବୁଗୁଡିକର ସାର୍ଥକ ସଂଗତି ଓ ସଂପର୍କ ବିଷୟ ଅଧିଗତ କରିବା ଜପ-ଧ୍ୟାନର କାର୍ଯ୍ୟ । ଅତଏବ ପ୍ରତ୍ୟହ ଜପ-ଧ୍ୟାନ ଅବଶ୍ୟ କରିବାକୁ ହେବ । ଶ୍ରୀଶ୍ରୀଠାକୁର କହିଛନ୍ତି -

"ଉଷା-ନିଶାୟ ମନ୍ତ୍ରସାଧନ
ଚଲା - ଫେରାୟ ଜପ
ଯଥା ସମୟେ ଇଷ୍ଟନିଦେଶ
ମୂର୍ତ୍ତ କରାଇ ତପ ।"

ନାମ-ଧ୍ୟାନ ଫଳରେ ଆମମାନଙ୍କ ମସ୍ତିଷ୍କ କୋଷ ଗୁଡିକ ଉତ୍ତେଜିତ ହୋଇ ଖୁବ୍ ସମ୍ବେଦନଶୀଳ ହୋଇଉଠେ - ଇନ୍ଦ୍ରିୟଗ୍ରାମର ତୀକ୍ଷ୍ଣତା ବଢ଼ିଯାଏ ।

ପ୍ରତ୍ୟହ ସକାଳ-ସଂଧ୍ୟାରେ ନିର୍ଦ୍ଧାରିତ ସମୟରେ ପ୍ରାର୍ଥନା କରିବାକୁ ହେବ । ଶ୍ରୀଶ୍ରୀଠାକୁର ଗୁରୁତ୍ୱ ଦେଇ କହିଛନ୍ତି , -

"ଯେଥାୟ ଥାକିସ୍ ହୋସ୍‌ନା ବେହୋସ୍
କରତେ ସଂଧ୍ୟା ପ୍ରାର୍ଥନା
ହବିଇ ତାତେ କର୍ମ ନିପୁଣ
ଶକ୍ତି ପାବେ ବର୍ଦ୍ଧନା ।"୬୮

ପ୍ରାର୍ଥନାନ୍ତେ ଇଷ୍ଟଦେବ ଶ୍ରୀଶ୍ରୀଠାକୁର, ଜଗଜ୍ଜନନୀ ଶ୍ରୀଶ୍ରୀବଡ଼ମା', ପରମପୂଜ୍ୟପାଦ ଶ୍ରୀଶ୍ରୀବଡ଼ଦା, ଆଚାର୍ଯ୍ୟଦେବ ଶ୍ରୀଶ୍ରୀଦାଦା'ଙ୍କୁ ପ୍ରଣାମ କରିବା ଓ ତତ୍ପରେ ପିତା, ମାତା, ଶ୍ୱଶୁର-ଶାଶୁ, ସ୍ୱାମୀ, ଗୁରୁଜନ ପ୍ରଭୃତିଙ୍କୁ ପ୍ରଣାମ କରିବା ଉଚିତ୍ ।

ନିତ୍ୟ ସତ୍‌ସଙ୍ଗ କରିବା ଦରକାର । ଏଣୁ ସୁଯୋଗ ପାଇବାମାତ୍ରେ ସତ୍‌ସଙ୍ଗ ଅଧିବେଶନରେ ଯୋଗଦାନ କରିବା ଉଚିତ୍ । ନିଜ ପରିବାରରେ ବାରମ୍ବାର ସତ୍‌ସଙ୍ଗର ବ୍ୟବସ୍ଥା କରିବା ଆବଶ୍ୟକ ।

ମନେ ରଖିବାକୁ ହେବ ଯେ ଯଜନର ମୂଳ ଉଦ୍ଦେଶ୍ୟ ହେଉଛି - ଇଷ୍ଟ ଯେପରି ଚାହାଁନ୍ତି ସେଇ ଭାବରେ ନିଜକୁ ପ୍ରସ୍ତୁତ କରି ତୋଳିବା ଏବଂ ତାଙ୍କର ଅଭିପ୍ରାୟ ଅନୁଯାୟୀ ନିଜକୁ ଗଢ଼ି ତୋଳିବା । ଏହି ପ୍ରଚେଷ୍ଟା ଭିତର ଦେଇ ନିଜ ପ୍ରବୃତ୍ତିଗୁଡିକ ନିୟନ୍ତ୍ରିତ ହୁଏ । ଆଉ, ପ୍ରବୃତ୍ତି ନିୟନ୍ତ୍ରଣ ଛଡା ସୁଖ ନାହିଁ । ଅଚ୍ୟୁତ ଇଷ୍ଟପ୍ରାଣତା ଭିତର ଦେଇ ପ୍ରବୃତ୍ତି ନିୟନ୍ତ୍ରଣ ସହଜ ହୁଏ । ଇଷ୍ଟଙ୍କ ଗଭୀର ଭଲପାଇବା ଫଳରେ ବିନା କସରତରେ ଚଳନ-ଚରିତ୍ର ବିପୁଳ ସଂଜୀବନୀ ଐଶ୍ୱର୍ଯ୍ୟର ଔଜ୍ଜଲ୍ୟରେ ଉଦ୍‌ଭାସିତ ହୁଏ ।

ଉପରେ ଯଜନ ପ୍ରସଙ୍ଗରେ ଆଲୋଚନା କରାଗଲା । ବର୍ତ୍ତମାନ ଯାଜନ ସଂପର୍କୀୟ ସଂକ୍ଷିପ୍ତ ଆଲୋଚନା କରିବା । ଦୁଧ ଛଡା ଯେପରି ମାଖନ ହୁଏନା, ସେହିପରି ଯଜନକୁ ବାଦ୍ ଦେଲେ ଯାଜନରେ କୌଣସି ପ୍ରତ୍ୟୟ ନ ଥାଏ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ଭିତରେ ଦେଖୁଁ -

"ଯଜନ ହାରା ଯାଜନ
ଆର୍ ଦୁଧ ଛାଡା ମାଖନ
ଏକଇ ରକମ ପ୍ରାୟ ।"[୬୯]

ଯାଜନର ଅର୍ଥ ଇଷ୍ଟ ସଂଚାରଣ, ଅର୍ଥାତ୍ ସତ୍‌ଚିନ୍ତା-ବାକ୍ୟ-କର୍ମ ଭିତର ଦେଇ ସେବା ଓ ସାହଚର୍ଯ୍ୟରେ, ପ୍ରୀତି ଓ ପ୍ରେରଣାରେ ମଣିଷକୁ ଉଦ୍ଦୀପ୍ତକରି ଇଷ୍ଟନିଷ୍ଠ କରି ତୋଳିବା । ବ୍ୟକ୍ତିଗତ ସାଧନା ତଥା ଇଷ୍ଟପ୍ରାଣତା ଉପରେ ଯାଜନ କରିବା ନିର୍ଭର କରେ । ନତୁବା ତାହା ପ୍ରାଣହୀନ ଉପଦେଶ ଦାନ ହିଁ କେବଳ ହୋଇଥାଏ । ଶ୍ରୀଶ୍ରୀଠାକୁର କହିଛନ୍ତି, -

"ଉପଦେଶ ତୁଇ ଦେ ନା ଯେତେ ହିଁ
ଉଦାହରଣ ହ' ଆଗେ,
ସଞ୍ଚାରଣାରେ ଦୀପ୍ତ କର
କୃତିଦୀପନ ରାଗେ ।"[୭୦]

ଅତଏବ ଆଚରଣଶୀଳ ନହୋଇ କେବଳ ଶୁଣାକଥା ବା ବହିପଢ଼ା କଥା ଉପରେ ନିର୍ଭର କରି ଇଷ୍ଟଙ୍କର ଯାଜନ ବିଶେଷ ଫଳପ୍ରସୂ ହୋଇ ନ ପାରେ । ଯାଜନ ଭିତର ଦେଇ ଧର୍ମଦାନ କରାଯାଇଥାଏ ଏବଂ ସବୁ ଦାନଠାରୁ ଶ୍ରେଷ୍ଠଦାନ ହେଉଛି - ଧର୍ମଦାନ, ଅର୍ଥାତ୍ ବଞ୍ଚିବା-ବଢ଼ିବାର ନୀତି-ବିଧି ଦାନ ।

ଶ୍ରୀଶ୍ରୀଠାକୁର କହୁଛନ୍ତି - "ଯାଜନ ମାନେ ହେଉଛି ମଣିଷର ସଂସର୍ଗରେ ଯାଇ ବାକ୍ୟ, ଆଚାର, ବ୍ୟବହାର, ସାହଚର୍ଯ୍ୟ ଓ ସାହାଯ୍ୟ ଦ୍ୱାରା ବାସ୍ତବ କରଣ ଭିତର ଦେଇ ନିଜର ଇଷ୍ଟପ୍ରାଣତାକୁ ସେବାପଟୁ ଦକ୍ଷତାଦ୍ୱାରା ଆକୃଷ୍ଟ, ଉଦ୍‌ବୁଦ୍ଧ ଓ ଅନୁରଂଜିତ ହୋଇ ତୁମର ଇଷ୍ଟଙ୍କଠାରେ ଏମିତି ଭାବେ ଅତୁଟ ଓ ଆପ୍ରାଣଭାବେ ଯୁକ୍ତ ଓ ଅନୁରକ୍ତ ହୋଇଉଠିବେ, ଯାହାଫଳରେ ସ୍ୱତଃ ଶ୍ରଦ୍ଧା ଓ ଭକ୍ତିର ଉତ୍ସାରଣାରେ ସେ ପୂଜାରେ, ଯଜ୍ଞରେ, ଦାନରେ ତତ୍‌ସହିତ ଅସ୍ତି-ବୃଦ୍ଧିର ଅମୃତକର୍ଷଣ ସହଜ ଆଲିଙ୍ଗନରେ ନିରନ୍ତର ହୋଇଉଠେ ।"

"ପ୍ରେଷ୍ଟ-ପୂଜାୟ ପ୍ରେଷ୍ଟ-ଦାନେ
ପ୍ରେଷ୍ଟସଙ୍ଗ ନେଶାୟ
ରଙ୍ଗିଲ-ମାତାଲ୍ ରକମ ଯେଥାୟ
ଯାଜନ ବଲେ ତାୟ ।"[୭୧]

ଶ୍ରୀଶ୍ରୀଠାକୁର ଯଜନ ସହିତ ଯାଜନର ବିଧାନ ଦେଇଛନ୍ତି । ଏହିଠାରେ ସେ ଅନ୍ୟାନ୍ୟ ସାଧୁ-ସନ୍ତଙ୍କଠାରୁ ଅଲଗା । ଅନ୍ୟାନ୍ୟ ସାଧୁମହାତ୍ମାଗଣ ମନୁଷ୍ୟକୁ ଈଶ୍ୱରଙ୍କ ପଥରେ, ଭକ୍ତିମାର୍ଗରେ ଆଗେଇ ଯିବାପାଇଁ ପଥନିର୍ଦ୍ଦେଶ କରିଛନ୍ତି, ଆବଶ୍ୟକ କେତେକ ନୀତି-ବିଧି ଦେଇଛନ୍ତି । କିନ୍ତୁ, ଭଲରେ ବଞ୍ଚିବାକୁ ହେଲେ ନିଜର ପରିବେଶକୁ ଭଲ ରଖିବାକୁ ହେବ ଏବଂ ସେ ଦାୟିତ୍ୱ ମଧ୍ୟ ଆମର । ପରିବେଶକୁ ସତ୍‌ଚେତନାରେ ଉଦ୍‌ବୁଦ୍ଧ ଓ ଅସତ୍ ନିରୋଧୀ କରି ତୋଳିବାକୁ ହେବ । ଯଦି ପରିବେଶ ସୁସ୍ଥ ଓ ସତ୍ ନରୁହେ, ତାହା ଆମକୁ ମଧ୍ୟ ଛାଡ଼ିବ ନାହିଁ । ଏଣୁ ପରିବେଶକୁ ଭଲ କରିବାକୁ ହେଲେ ଯାଜନ ଦରକାର । ସୁତରାଂ ସବୁଦିଗଦେଇ ଯାଜନ କରିବାକୁ ହୁଏ । ଶ୍ରୀଶ୍ରୀଠାକୁର କହୁଛନ୍ତି - "ଯାଜନ କଥାରେ ହୁଏ, ବକ୍ତୃତାରେ ହୁଏ, ଗାନ ଗାଇବାରେ, ଲେଖାରେ, ଅଭିନୟରେ ହୁଏ, ରେଡିଓରେ ହୁଏ, ସିନେମାରେ ହୁଏ, ଟେଲିଭିଜନରେ ହୁଏ, କୃଷିରେ ହୁଏ, ଶିଳ୍ପରେ ହୁଏ, ଶିକ୍ଷାରେ ହୁଏ, ସ୍ୱାସ୍ଥ୍ୟରେ ହୁଏ, ବ୍ୟବସାୟ-ବାଣିଜ୍ୟରେ ହୁଏ, ସାମାଜିକ କ୍ରିୟାକଳାପରେ ହୁଏ, ଉତ୍ସବରେ ହୁଏ, ଖେଳିବାରେ ହୁଏ, ପ୍ରଦର୍ଶନୀରେ ହୁଏ, ଆଚାର-ଆଚରଣରେ ହୁଏ, ଚରିତ୍ରରେ ହୁଏ, ସଂଗଠନରେ ହୁଏ, ସେବାରେ ହୁଏ, - ନ ହୁଏ କେଉଁଥିରେ କହିପାରିବେ ?"[୭୨]

ଝିଅମାନଙ୍କ ଯାଜନ କରିବା ପ୍ରସଙ୍ଗରେ ଶ୍ରୀଶ୍ରୀଠାକୁର କହିଛନ୍ତି - "…. ଆଉ ବି ମନେ ରଖିବାକୁ ହେବ, ଝିଅମାନେ ସେମାନଙ୍କ ଜଗତରେ ଯାହା କରଣୀୟ ତାହା କରିବେ ପ୍ରୀତିର ସହିତ, ସଦାଚାର ସହିତ, ସୌନ୍ଦର୍ଯ୍ୟ ସହିତ । ସେମାନେ ଯାଜନ କରିବେ ସେମାନଙ୍କ ପରି ।"[୭୩]

ଯାଜନର ବ୍ୟାପକ କ୍ଷେତ୍ର ଜୀବନର ପ୍ରତିଟି ସ୍ତରରେ ଅଛି । ସୃଷ୍ଟିରେ ଏପରି କିଛି ନାହିଁ ଯେଉଁଠି ଯାଜନର ଅବକାଶ ନାହିଁ । ଇଷ୍ଟଙ୍କଠାରେ ସୁକେନ୍ଦ୍ରିକ ବିକଶିତ ମସ୍ତିଷ୍କଶକ୍ତି ଏଇ ବିନିଯୋଗ କ୍ଷେତ୍ରକୁ ଠିକ୍ ରୂପେ ଧରିପାରେ ଏବଂ ଲୋକକଲ୍ୟାଣ ପାଇଁ ଯେଉଁଠି ଯେଭଳି ବ୍ୟବହାର କରିବା ଦରକାର ତା' କରିପାରେ । ଦିନେ ଯତି ଆଶ୍ରମ ବାରଣ୍ଡାରେ ଶ୍ରୀଶ୍ରୀଠାକୁର ଯାଜନ କରିବା ସଂପର୍କରେ କହିଥିଲେ, "ଯେ କୌଣସି ତୁଚ୍ଛ ବିଷୟରୁ ଆରମ୍ଭ କରି ଇଷ୍ଟଙ୍କଠାରେ ପହଁଞ୍ଚିବା ଦରକାର । ଧରନ୍ତୁ, ଏଇ ଯେ ବାଉଁଶଟା ପଡିଛି କି ଏଇ ଯେ ପକ୍ଷୀଟା ଉଡି ଯାଉଛି, ସେଇଠୁ ଆରମ୍ଭ କରି ଇଷ୍ଟଙ୍କ ପାଖରେ ପହଁଞ୍ଚିବାର ବୋଧଶକ୍ତି ଆପଣଙ୍କର ଥିବା ଦରକାର ।" ଏଥିରୁ ଜଣାଯାଏ ଯେ ଭଲ ଯାଜକ ହେବାକୁ ହେଲେ କେତେ ଦକ୍ଷତା ଓ ବୋଧଶକ୍ତିର ପ୍ରୟୋଜନ । ଯାଜକ ବୈଶିଷ୍ଟ୍ୟ ଭିତରେ ଅଛି - "ମିଷ୍ଟ କଥାବାର୍ତ୍ତା, ମନୋମୁଗ୍ଧକର ଆଚାର-ବ୍ୟବହାର, କୁଶଳ ଚାଲିଚଳନ, ସହାନୁଭୂତି ସଂପନ୍ନ ସ୍ୱତଃ-ସ୍ୱେଚ୍ଛ ସେବାପଟୁ ହାବଭାବ ଓ ଅଭ୍ୟାସ, ଏବଂ ଅଟୁଟ ଇଷ୍ଟାପୂତ ଦୃଢ଼ ପ୍ରତ୍ୟୟ ।"[୭୪]

ଶ୍ରୀଶ୍ରୀଠାକୁର ବିଶେଷ ଭାବେ କହିଛନ୍ତି, "ମୋ କଥା ବିହିତ ଭାବେ ଯାହା ଅବଗତ ହୋଇଛ, ବୋଧରେ ଫୁଟି ଉଠିଛି ଯାହା, ତାହାହିଁ ଅନ୍ୟକୁ କୁହ, ଯାହା ବୁଝିନା - କହିବାର ଲାଳସାବଶତଃ ତାହା କହିବାକୁ ଯାଇ ବ୍ୟତିକ୍ରମ ସୃଷ୍ଟି କରି ମଣିଷକୁ ବିଭ୍ରାନ୍ତ କରି ତୋଳନା, ନିଜେ ମଧ୍ୟ ହୁଅନା ।" (ଯାଜୀସୂକ୍ତ) । ସତ୍ସଙ୍ଗରେ ଦୀକ୍ଷିତ ପ୍ରତ୍ୟେକ ବ୍ୟକ୍ତି ନିତ୍ୟ ସ୍ୱତଃ ଅନୁଜ୍ଞା' ଆବୃତ୍ତି ଓ ଅଭ୍ୟାସ କରନ୍ତି । ଏଥିରେ 'ଯାଜନଜୈତ୍ର' ହେବା କଥା କୁହାଯାଇଛି । ଅର୍ଥାତ୍ ଯାଜନରେ ଜୟଯୁକ୍ତ ହେବାକୁ ହେବ । ଶ୍ରୀଶ୍ରୀବଡ଼ଦା'ଙ୍କ ଭାଷାରେ - "ଏଇ ବ୍ୟାପକ ପୁଣ୍ୟ-ପ୍ରୟାସର ନାମ ଯାଜନଚର୍ଯ୍ୟା । ... ଇଷ୍ଟଙ୍କ ପ୍ରତି ଅଚ୍ୟୁତ ନିଷ୍ଠା ଓ ଆନତି ନେଇ ପ୍ରବୃତ୍ତି ପ୍ରହତ, ପଥଭ୍ରଷ୍ଟ, ଦିଗହରା ମଣିଷକୁ ପ୍ରାଣଭରା ସ୍ନେହ, ପ୍ରୀତି, ଦରଦ, ସେବା, ସାହଚର୍ଯ୍ୟ, ସାହାଯ୍ୟ, ବାକ୍ୟ-ବ୍ୟବହାରର ଭିତର ଦେଇ ଏହି

ସତ୍ତା ସମ୍ବର୍ଦ୍ଧନୀ ଜୀବନ୍ତ କେନ୍ଦ୍ର-କୀଳକଙ୍କ ଆଡକୁ ଆକୃଷ୍ଟ କରି କଲ୍ୟାଣତପା କରି ତୋଳିବାକୁ ହେବ ।" କିଂତୁ ଏହି ଯାଜନ ମୂଳରେ ଅଛି ଯଜନ, ଅର୍ଥାତ୍ ଯାଜକର ନିଜସ୍ୱ ତପସ୍ୟା, ଚଳନ-ଚରିତ୍ର ।

ଯଜନ-ଯାଜନର ମୂଳ ଭିତ୍ତି ହେଉଛି - ଇଷ୍ଟଭୃତି ।

"ଜପ-ଧ୍ୟାନ ମନେ ମନେ
ସେବାୟ ମୁଖେ ଯାଜନ,
ଯାଇ କରିସ୍ ନା କରିସ୍‌ରେ ତୁଇ
ଇଷ୍ଟଭୃତି ପାଳନ
ଦୁଃଖ-ଦୈନ୍ୟ ଆପଦ-ବିପଦ
ଯଖନଇ ଯା' ଆସୁକ୍
ଦେଖିସ୍ କେମନ ଯାବେଇ ଉବେ
ଯତ ଯାଇନା ଥାକୁକ୍ ।[୨୫]

"ଇଷ୍ଟଭୃତି ହେଲା daily offering (ନିତ୍ୟଉତ୍ସର୍ଗ ଅବଦାନ), ଯା' ସଂଗ୍ରହ କରି ଇଷ୍ଟଙ୍କୁ ନିବେଦନ କରିବାକୁ ହୁଏ । ଏଇଟା ହେଲା prime urge of life (ଜୀବନର ପ୍ରାଥମିକ ସମ୍ବେଗ) । ଏହି ଗୁଡିକ କରିବା ଭିତର ଦେଇ ମହାଭୀତି ଯେଉଁଥିରେ ହୁଏ, ସେଗୁଡିକୁ ଏଡେଇ ଚଲାଯାଏ । ମହାଭୀତିମାନେ ଯଦି ମୃତ୍ୟୁଭୟ ହୁଏ, ତା'ହେଲେ ନିଷ୍ଠାଭରେ ଯଜନ-ଯାଜନ- ଇଷ୍ଟଭୃତି କରିକରି ମୁଁ descern (ନିର୍ଦ୍ଧାରଣ) କରିପାରେ clue of death କ'ଣ (ମରଣର ସୂତ୍ର.କ'ଣ) ? ଅର୍ଥାତ୍ କି କି କାରଣରୁ ମୃତ୍ୟୁ ବା ବିନାଶ ଆସେ ।"

ଇଷ୍ଟ ହେଉଛନ୍ତି ମଙ୍ଗଳର ମୂର୍ତ୍ତପ୍ରତୀକ, ଧର୍ମର ମୂର୍ତ୍ତିମନ୍ତବିଗ୍ରହ । ତାଙ୍କୁ ବାଦ୍‌ଦେଇ ମଙ୍ଗଳକାମୀ ହେବା ଓ ଧର୍ମାଚରଣ କରିବା ସୁଦୂରପରାହତ । ସୁତରାଂ, ମଙ୍ଗଳର ଭରଣ କରି ଚାଲିବା ହିଁ ଇଷ୍ଟଭୃତି । ପରିପାଳନ ବ୍ୟତୀତ ଇଷ୍ଟପୂଜା, ଯଜ୍ଞ, ତପସ୍ୟା ଇତ୍ୟାଦିର ମାନେ କିଛି ହୁଏନା, ଅର୍ଥାତ୍ ତାହା କେବଳ ଅନୁଷ୍ଠାନ ସର୍ବସ୍ୱରେ ପରିଣତ ହୋଇଥାଏ । ଯେଉଁ ମୁହୂର୍ତ୍ତରେ

ଇଷ୍ଟ ଆମ ଜୀବନରେ ଅନୁପସ୍ଥିତ, ସେ ମୁହୂର୍ତ୍ତଟା ଫାଙ୍କା ରହିବ ନାହିଁ, ସେଠାରେ ଘଟିବ ଅନିଷ୍ଟ ବା ସଇତାନର ପ୍ରବେଶ । ତେଣୁ ସବୁ କ୍ଷେତ୍ରରେ ସବୁ ସମୟରେ ସବୁକିଛି ହେବା ଦରକାର ଇଷ୍ଟଙ୍କ ଅଭିପ୍ରାୟ ମାଫିକ୍ । ସେଥିପାଇଁ ଶ୍ରୀଶ୍ରୀଠାକୁର ଇଷ୍ଟଭୃତିକୁ ଜୀବନର ସବୁଠାରୁ ବଡ଼ ଧନ୍ଦା ବୋଲି କହିଛନ୍ତି ।

ଆମର ଏହି ଜୀବନ ପାଇଁ ଆମେ ସ୍ରଷ୍ଟା-ପୁରୁଷ-ଈଶ୍ୱର, ମାନବଜାତି ତଥା ପାରିପାର୍ଶ୍ୱିକ ସମାଜ ଓ ବିଶ୍ୱ-ପ୍ରକୃତି ପାଖରେ ଋଣୀ । ସମସ୍ତଙ୍କର ସେବା ଓ ସହଯୋଗିତା ଉପରେ ଆମର ଅସ୍ତିତ୍ୱ ନିର୍ଭରଶୀଳ । ସେଇ ପରମସତ୍ତାଙ୍କ ଦୟାରେ ଆମ ସମସ୍ତଙ୍କ ସତ୍ତା ସତ୍ତାୟମାନ । ଏହି ସତ୍ୟକୁ ଯଦି ଆମେ ଉପଲବ୍ଧି କରିବା, ତେବେ ସେହି ପରମସତ୍ତାଙ୍କ ପ୍ରତି ଆମର କୃତଜ୍ଞତାର ଅନ୍ତ ନାହିଁ । ଇଷ୍ଟ ହେଉଛନ୍ତି ସେହି ପରମସତ୍ତା, ନିଖିଳ ବ୍ରହ୍ମାଣ୍ଡର ଜୀବନ-ଉତ୍ସ । ତାଙ୍କୁ ଭରଣ-ପୂରଣ କରିବା ଅର୍ଥ ଆମ ସତ୍ତାକୁ ଭରଣ ପୂରଣ କରିବା । ତେଣୁ, ଇଷ୍ଟଙ୍କ ଭରଣାର୍ଥେ ଶ୍ରଦ୍ଧା ଓ ନିଷ୍ଠାର ସହିତ ନିତ୍ୟ ଅନ୍ନ-ଜଳ ଗ୍ରହଣ ପୂର୍ବରୁ ବିଧି-ମାଫିକ୍ ଭୋଜ୍ୟ ବା ତଦନୁକଳ୍ପେ ଅର୍ଘ୍ୟ ଉତ୍ସର୍ଗ ବା ନିବେଦନ କରିବାକୁ ହେବ ।

ଆପ୍ରାଣତାର ସହିତ ଇଷ୍ଟଭୃତି କରି ଘରୁ ବାହାରକୁ ବାହାରିଲେ, ଶ୍ରୀଶ୍ରୀଠାକୁର କହୁଛନ୍ତି, "ମଣିଷ ଅଜେୟ ହୋଇଉଠେ" । ପୁଣି କହିଛନ୍ତି - "ଏଇଟା ହେଲା ଇଷ୍ଟ ପ୍ରାଣତାର spine (ମେରୁଦଣ୍ଡ ସ୍ୱରୂପ) । ମୁଁ ଯେ କେତେ ଇଷ୍ଟପ୍ରାଣ ତା'ର ପରୀକ୍ଷା ଏଇ ନିଖୁଣ ଇଷ୍ଟଭୃତି ପରିପାଳନରେ ।"

ବର୍ତ୍ତମାନ ଅସ୍ଥିର ଜୀବନଯାତ୍ରାରେ ମୃତ୍ୟୁ ଯେଉଁଠି ରାଜତ୍ୱ କରୁଛି, ବିରୋଧ, ବିଶୃଙ୍ଖଳା ଯେଉଁ ସମାଜରେ ସହାସ୍ୟ ବିଦ୍ୟମାନ, ଧର୍ମ ନାମରେ ଅସହନଶୀଳତା, କୁତ୍ସିତ ଆଚାର-ଆଚରଣ ଓ ହିଂସା-ଦ୍ୱେଷ ନିତ୍ୟ ସହଚର, 'ପ୍ରବୃତ୍ତି ପରିତୁଷ୍ଟି ହିଁ ଯେଉଁଠି ଜୀବନର ଅର୍ଥ ରୂପେ ଦଣ୍ଡାୟମାନ, ଏହି ପରିସ୍ଥିତିରେ ଘଡି-ସନ୍ଧି ମୁହୂର୍ତ୍ତରେ ଯୁଗତ୍ରାତା ଶ୍ରୀଶ୍ରୀଠାକୁର ଆମମାନଙ୍କୁ

ଜୀବନ ଦାନ କରିବାକୁ ଆସିଛନ୍ତି ଏହି ତ୍ରୟୀବ୍ରତ ଭିତରେ ନିରାପତ୍ତାର ଆଶ୍ୱାସ ଦେଇଛନ୍ତି । ସେ ନିର୍ଭର ପ୍ରତିଶ୍ରୁତି ଦେଇକହିଛନ୍ତି -

"ଯେତେ ହିଁ ଆସୁ ଆପଦ-ବିପଦ
ଯେପରି ହେଉ ପ୍ରାଣ
ଇଷ୍ଟଭୃତି ଆଣେ ହିଁ ଆଣେ
ସବୁରି ପରିତ୍ରାଣ ।"[୨୬]

ପୂର୍ବରୁ ଆଲୋଚିତ ହୋଇଛି ଯେ ଯଜନ-ଯାଜନ-ଇଷ୍ଟଭୃତି ପରସ୍ପର ଅଛେଦ୍ୟ ଭାବେ ଜଡିତ । ଇଷ୍ଟଭୃତି ନିଖୁଣ ଭାବେ କରିବା ପାଇଁ ଯଜନ-ଯାଜନ କରିବା ଅପରିହାର୍ଯ୍ୟ ଏବଂ ଯଜନ ଯାଜନ କରିବାକୁ ହେଲେ ଇଷ୍ଟଭୃତି ମଧ୍ୟ ଠିକ୍ ଭାବେ କରିବା ଦରକାର । ଶ୍ରୀଶ୍ରୀଠାକୁର କହୁଛନ୍ତି -

"ଦୀକ୍ଷା ନେଲେ ଜାଣିଥା ମନେ
ଇଷ୍ଟଭୃତି କରିବାକୁ ହୁଏ
ଇଷ୍ଟଭୃତି ବିହୀନ ଦୀକ୍ଷା
କେବେ କ'ଣ ଚେତନ ରୁହେ ?"[୨୭]

ଏହିସବୁ କରୁକରୁ ଆମ ଭିତରେ ଓ ବାହାରେ ଇଷ୍ଟପ୍ରତିଷ୍ଠାର ବୁଦ୍ଧି ଆସେ, ଏବଂ ଇଷ୍ଟାନୁରାଗ ସୃଷ୍ଟି ହୁଏ ।

ସୁତରାଂ, ଯଜନ-ଯାଜନ-ଇଷ୍ଟଭୃତିକୁ ଛାଡ଼ି ଆଉ ଯାହା ଯେତେ ଯେପରି କରୁନା କାହିଁକି କେଉଁଥିରେ ଫଳପ୍ରଦ ଆତ୍ମରକ୍ଷା ତଥା ପରିବେଶ ରକ୍ଷାର ଉପାୟ ନାହିଁ । ବଜ୍ର ନିର୍ଘୋଷ କଣ୍ଠରେ ଘୋଷଣା କରିଛନ୍ତି ପରମଦୟାଲ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର -

"ହୋସ୍ ନା ଯୋଗୀ ହୋସ୍ ନା ଧ୍ୟାନୀ
ଗୋସାଇଁ ଗୋବିନ୍ଦ ଯାଇ ନା ହୋସ୍
ଯଜନ-ଯାଜନ-ଇଷ୍ଟଭୃତି
ନା କର୍ଲେ ତୁଇ କିଛୁଇ ନସ୍ ।"[୨୮]

ପୁଣି,

"ଯଜନ-ଯାଜନ-ଇଷ୍ଟଭୃତି
ତିନୋଟି ଆୟୁଧ ନେଇ
ଚାଲରେ ଚାଲ ଆର୍ଯ୍ୟ ପିଲା
ଜୀବନ-ପଥଟି ବାହି ।"[୭୯]

ଯଜନ-ଯାଜନ-ଇଷ୍ଟଭୃତି ସହିତ ସ୍ୱସ୍ତ୍ୟୟନୀ ଓ ସଦାଚାର ପାଳନ କରି ଚାଲିଲେ ମନୁଷ୍ୟ ଜୀବନର ମହାନ୍ ବିବର୍ତ୍ତନ ସାଧିତ ହୁଏ । କିନ୍ତୁ ମନେ ରଖିବାକୁ ଯେ ଆମେ ଯେତେ ସଦାଚାର ଯୁକ୍ତ ହେଉନା କାହିଁକି ନିତ୍ୟ ଯଜନ-ଯାଜନ ଓ ଇଷ୍ଟଭୃତି ପରିପାଳନ ନକଲେ ଜୀବନର ବିବର୍ତ୍ତନ ତଥା ଉଦ୍‌ବର୍ଦ୍ଧନ ଅସମ୍ଭବ । ଶ୍ରୀଶ୍ରୀଠାକୁର ପ୍ରତିଟି ବ୍ୟକ୍ତି ଓ ପରିବାର ଠାରୁ ଯେଉଁ ଆଶା ପୋଷଣ କରିଛନ୍ତି – ତାହା ସ୍ୱର୍ଣ୍ଣିମ ଆଭାରେ ଆଶାନ୍ୱିତ କରିତୋଳେ । ସେ କହିଛନ୍ତି – "ମୁଁ ଯେଉଁ ଯଜନ-ଯାଜନ-ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ ଓ ସଦାଚାରର କଥା କହିଛି, ସାତ୍ୱତ କୁଳପ୍ରଥା, ବିବାହ-ବିଧି ଓ ଜନ୍ମଗତ ସଂସ୍କାର ସମ୍ମତ ଶିକ୍ଷା ଏବଂ ଜୀବିକା ସଙ୍ଗରେ ଏହି ଗୁଡିକ ଯଦି ବଂଶ ପରଂପରାରେ ଅଭ୍ୟାସ ଗତ ହୁଏ – ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାକୁ ମୁଖ୍ୟ କରି – ତେବେ ଭାରତ ଓ ଅନ୍ୟାନ୍ୟ ଦେଶରେ ଭବିଷ୍ୟତରେ ବହୁ ବ୍ରହ୍ମଜ୍ଞାନୀଙ୍କର ଆବିର୍ଭାବ ହେବା ଅସମ୍ଭବ ନୁହେଁ । ମୁଁ ଯାହା ଦେଇ ଯାଉଛି ତା'ର ମୂଳ ଜିନିଷଗୁଡିକ କ୍ରମାଗତ ଶତଶତ ବର୍ଷ ଧରି ପ୍ରତ୍ୟେକଟି ପରିବାରରେ ନିଷ୍ଠାର ସହିତ ପାଳିତ ହେଲେ ମଣିଷ ଦେବତାରେ ପରିଣତ ହେବ ।"[୮୦]

ଅତଏବ, ଯଜନ, ଯାଜନ ଓ ଇଷ୍ଟଭୃତିକୁ ଅଭ୍ୟାସଗତ କରିବାକୁ ହେବ । କଥାରେ ଅଛି – 'Habit is the second Nature'. ଅଭ୍ୟାସଗତ କରୁକରୁ ଏହା ପ୍ରକୃତିରେ ପରିଣତ ହୋଇ ବଂଶ ପରଂପରାକ୍ରମେ ସଂଚାରିତ ହୋଇଚାଲିବ ।

# ସ୍ୱସ୍ତ୍ୟୟନୀ ଓ ସଦାଚାର

ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର ସୂତ୍ରାକାରରେ କହିଛନ୍ତି -

"ସ୍ୱସ୍ତ୍ୟୟନୀ ଇଷ୍ଟଭୃତି,
ବିପାକ ତାରଣ ବଜ୍ରନୀତି ।"[୮୧]

"ସ୍ୱସ୍ତ୍ୟୟନୀ ପାଳେନା
ଉନ୍ନତିରେ ଚଳେନା ।"[୮୨]

"ସ୍ୱସ୍ତ୍ୟୟନୀ ମୁକ୍ତି ଆଣେ
ରାଷ୍ଟ୍ରସହ ପ୍ରତିଜନେ ।"[୮୩]

ଦୀକ୍ଷା ମାଧ୍ୟମରେ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କୁ ଇଷ୍ଟରୂପେ ଜୀବନରେ ଗ୍ରହଣ କଲାପରେ ଯଜନ-ଯାଜନ-ଇଷ୍ଟଭୃତି ପରାୟଣ ହୋଇ ଅନୁଶୀଳନୀ ଆଚରଣ ଭିତର ଦେଇ ତାଙ୍କୁ ନିଜ ଜୀବନରେ ଓ ପରିବାର ଏବଂ ପରିବେଶରେ ପ୍ରତିଷ୍ଠା କରି ଚାଲିବା ହିଁ ସାଧନା । ଏହି ସାଧନାରେ ଯିଏ ଯେତେ ସଫଳକାମ, ସେ ସେତେ ହିଁ ଜୀବନରେ ସୁଖ-ଶାନ୍ତି-ଆନନ୍ଦର ଅଧିକାରୀ ଏବଂ ତା' ପାଖରେ ଜୀବନ ରହସ୍ୟ ସ୍ୱାଭାବିକ ଭାବେ ଉଦ୍‌ଘାଟିତ । ପୁନଶ୍ଚ, ଏହି ସାଧନାର ପଥକୁ ଆହୁରି ଗତିଶୀଳ ଓ ଫଳପ୍ରସୂ କରିବାକୁ ହେଲେ ସ୍ୱସ୍ତ୍ୟୟନୀ-ବ୍ରତ ଗ୍ରହଣ ଏକାନ୍ତ ଆବଶ୍ୟକ । ସ୍ୱସ୍ତ୍ୟୟନୀ-ବ୍ରତଧାରୀ ବାସ୍ତବ ସାଧକ-ଜୀବନ ଯାପନ କରିଥାଏ । ଯଜନ, ଯାଜନ, ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ ଓ ସଦାଚାର ପାଳନକୁ ଜୀବନର ପଞ୍ଚନୀତି କୁହାଯାଇଥାଏ । ଏହା ପାଳନ କରୁଥିବା ବ୍ୟକ୍ତି ଯେ କୌଣସି ତଥାକଥିତ ସାଧକଙ୍କଠାରୁ ଉଚ୍ଚତର ତଥା ଉନ୍ନତ ଜୀବନର ଅଧିକାରୀ ଏଥିରେ ସନ୍ଦେହ ନାହିଁ ।

'ସ୍ୱସ୍ତ୍ୟୟନୀ' - ଏକ ବ୍ରତ । ସବୁଠାରୁ ଶ୍ରେଷ୍ଠବ୍ରତ । ଏହି ବ୍ରତ ଗ୍ରହଣ କରି ସାରାଜୀବନ ପାଳନ କରିବାର ନିର୍ଦ୍ଦେଶ ଅଛି । ସାମୟିକ

ପାଳନ କରିବାର କଥା କୁହାଯାଇ ନାହିଁ । ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ପ୍ରଦତ୍ତ ତଥା ପ୍ରବର୍ତ୍ତିତ ଏହି ବ୍ରତକୁ ଋତ୍ୱିକଙ୍କ ମାଧ୍ୟମରେ ଗ୍ରହଣ କରାଯାଏ । ସ୍ୱସ୍ତ୍ୟୟନୀ-ବ୍ରତ ପାଳନ କରିଲେ କେବଳ ଯେ ବ୍ୟକ୍ତିର ମୁକ୍ତି ସମ୍ଭବ - ତା'ନୁହେଁ, ବ୍ୟକ୍ତି ସହ ସମଷ୍ଟି ତଥା ରାଷ୍ଟ୍ରର ମୁକ୍ତି ମଧ୍ୟ ଅନାୟସ-ସାଧ୍ୟ । ସ୍ୱସ୍ତ୍ୟୟନୀ-ବ୍ରତ ସହ ସଦାଚାର ପାଳନ ଅଙ୍ଗାଙ୍ଗୀଭାବେ ଜଡିତ । ଅବଶ୍ୟ, ସ୍ୱସ୍ତ୍ୟୟନୀ-ବ୍ରତ ଗ୍ରହଣ କରି ନଥିବା ବ୍ୟକ୍ତି ତଥା ପରିବାର ସଦାଚାର ପାଳନ କରିବା ଉଚିତ୍ । କାରଣ, ଶ୍ରୀଶ୍ରୀଠାକୁର କହିଛନ୍ତି -

"ସଦାଚାରେ ବଞ୍ଚେ ବଢ଼େ
ଲକ୍ଷ୍ମୀ ବନ୍ଧା ତା'ର ଘରେ ।"[୮୪]
ସଦାଚାରେ ରତ ନୁହଁ
ପଦେ ପଦେ ତା'ର ଭୟ ।"[୮୫]

ଶ୍ରୀଶ୍ରୀଠାକୁର 'ସ୍ୱସ୍ତ୍ୟୟନୀ'କୁ ବ୍ୟକ୍ତି ଜୀବନ ଓ ଜାତୀୟ ଜୀବନର ବୀମା ଏବଂ ବିପାକ-ତାରଣ ବଜ୍ରନୀତି ବୋଲି ଅଭିହିତ କରିଛନ୍ତି । ଦାରିଦ୍ର୍ୟ ଓ ବେକାରୀ ଜର୍ଜ୍ଜରିତ ଜାତିକୁ ଦକ୍ଷ କରି ତୋଳିବାକୁ ସ୍ୱସ୍ତ୍ୟୟନୀବ୍ରତ ପ୍ରସାରର କଥା ଠାକୁର ବିଶେଷ ଭାବେ କହିଛନ୍ତି । ଠିକ୍ ଠିକ୍ ସ୍ୱସ୍ତ୍ୟୟନୀ ପାଳନରେ ଯେପରି ବ୍ୟକ୍ତିର ଦାରିଦ୍ର୍ୟ-ବ୍ୟାଧି କଟେ, ସେପରି ଦେଶ ଓ ଜାତି ପକ୍ଷରେ ଏକ ଅସ୍ତ୍ର ସ୍ୱରୂପ ମଧ୍ୟ । ଶ୍ରୀଶ୍ରୀଠାକୁରଙ୍କ ଶ୍ରୀମୁଖ ନିଃସୃତ ବାଣୀ ମଧ୍ୟରେ ଦେଖୁ -

"ସୁଚଳନାର ଗୋଟିଏ ହିଁ ପଥ
ସେଇ ସ୍ୱସ୍ତ୍ୟୟନୀ
ନିଖୁଣ ଭାବେ ଚଳିବୁ ଯେତେ
ଶ୍ରେଷ୍ଠ-ଉଦ୍ଦୀପନୀ ।"[୮୬]

"ଯଜନ-ଯାଜନ-ଇଷ୍ଟଭୃତି ମୋର ଅସ୍ତିତ୍ୱକୁ ଅକ୍ଷୁଣ୍ଣ ରଖିବା ପାଇଁ ଯେପରି ନିତ୍ୟ କରଣୀୟ, ସେପରି ସ୍ୱସ୍ତ୍ୟୟନୀ-ବ୍ରତ ସ୍ୱତଃ ସ୍ୱେଚ୍ଛାରେ ମୋ

ଦ୍ରୁତ ବୃଦ୍ଧି ଓ ଉନ୍ନତି ପାଇଁ ଅବଶ୍ୟ ଗ୍ରହଣୀୟ । ସ୍ୱସ୍ତ୍ୟୟନୀ ବ୍ରତ ଆମମାନଙ୍କୁ ବୃଦ୍ଧି ଦିଗକୁ becoming ଆଡ଼କୁ ନେଇଯାଏ । ଆଉ ଏହି ଇଷ୍ଟଭୃତି ମୋର ଅସ୍ତିତ୍ୱକୁ being କୁ ଅକ୍ଷୁଣ୍ଣ ରଖେ ।"

"ଇଷ୍ଟଭୃତି ଜିନିଷଟା ଆଗରୁ ଥିଲା । ସ୍ୱସ୍ତ୍ୟୟନୀ ଜିନିଷଟା ମୁଁ ଗୁଛେଇ ଦେଇଛି । ସ୍ୱସ୍ତ୍ୟୟନୀର formଟା ଦେଇଛି । ଏଇଟା ଏହି ଦିଗରୁ ନୂତନ । ଆଗେ ଥିଲେ ବି ବୁଝାଯାଉ ନଥିଲା ।"[୮୭]

ଶ୍ରୀଶ୍ରୀଠାକୁରଙ୍କ ଉପର୍ଯୁକ୍ତ ବାଣୀ ଓ ଆଲୋଚନାରୁ ସ୍ୱସ୍ତ୍ୟୟନୀର ପ୍ରବର୍ତ୍ତନ ବିଷୟରେ ସମ୍ୟକ୍ ଜାଣି ହୁଏ । ଶ୍ରୀଶ୍ରୀଠାକୁର ୧୯୩୭ ଖ୍ରୀଷ୍ଟାବ୍ଦର ଶେଷାର୍ଦ୍ଧରେ ସ୍ୱସ୍ତ୍ୟୟନୀ ବ୍ରତର ବିଧାନ ଦେଲେ । ସ୍ୱସ୍ତ୍ୟୟନୀର ପାଞ୍ଚଟି ନୀତି ସମ୍ବନ୍ଧରେ ମୁଖେ ମୁଖେ ଯାଜନ କରାଯାଉଥିଲା, ଏବଂ ସେତେବେଳେ 'ସତ୍‌ସଙ୍ଗୀ' ପତ୍ରିକା ଓ ପୁସ୍ତକାଦି ମାଧ୍ୟମରେ ଏହାର ପ୍ରଚାର କରାଗଲା । ପରବର୍ତ୍ତୀ ସମୟରେ ସତ୍‌ସଙ୍ଗୀ ମାନଙ୍କର ସାଧନାର ବିଶେଷ ଅଙ୍ଗ ରୂପେ ଗୃହୀତ ହୋଇଆସୁଛି । କିଂତୁ, ଯଜନ-ଯାଜନ-ଇଷ୍ଟଭୃତି ହିଁ ମୂଳ, ତା'ପରେ ସ୍ୱସ୍ତ୍ୟୟନୀ ପ୍ରସଙ୍ଗ ଆସେ । ଶ୍ରୀଶ୍ରୀଠାକୁର କହିଛନ୍ତି -

"ଯଜନ, ଯାଜନ, ଇଷ୍ଟଭୃତି
ସ୍ୱସ୍ତ୍ୟୟନୀର ପ୍ରଥମ ଧାପ,
ତା' ନ କରିଲେ ସ୍ୱସ୍ତ୍ୟୟନୀର
ହୁଏ ଜାଣିଥା ଅପଲାପ ।"[୮୮]

ପୁନଶ୍ଚ

"ଯଜନ-ଯାଜନ-ଇଷ୍ଟଭୃତି
ସହ ସ୍ୱସ୍ତ୍ୟୟନୀ ନେଲେ
ଏଇ ସାଧନେ ଧୀରେ ଧୀରେ
ପୁରୁଷାର୍ଥ ଯିବ ମିଳେ

ସ୍ୱସ୍ତ୍ୟୟନୀର ସ୍ୱଭାବ ପ୍ରାଣେ
ଇଷ୍ଟଭୃତିର ଅତୁଟ ପାଳନ
ଜୀବନ ଫଳେ ଫୁଲ୍ଲ ରୋଳେ
ଶକ୍ତିର ବି ହୁଏ ପ୍ରଖର ଚଳନ ।"[୮୧]

'ସ୍ୱସ୍ତ୍ୟୟନୀ' ସଂପର୍କରେ ଶ୍ରୀଶ୍ରୀଠାକୁର 'ଆଲୋଚନା ପ୍ରସଙ୍ଗେ'ରେ ଯାହା କହିଛନ୍ତି, ତାହା ବିଶେଷ ପ୍ରଣିଧାନର ବିଷୟ । ଶ୍ରୀଶ୍ରୀଠାକୁର କହିଛନ୍ତି, - "ସ୍ୱସ୍ତ୍ୟୟନୀର କେତୋଟି factor (ନୀତି) ପାଳନ କର, ଏଇ କେତୋଟି ଛଡା ପଥ ନାହିଁ । ସେଇଥିରେ ସବୁ ହେବ, ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ କରି କହୁଛି, - କୌଣସି ସନ୍ଦେହ ନାହିଁ । ଜଣେ ସ୍ୱସ୍ତ୍ୟୟନୀ କରୁଥିଲେ, ସେ ତ ବୃହତ୍‌ରୁ ବୃହତ୍ତର ପରିବେଶକୁ ଯିବ ନିଶ୍ଚୟ । ତା'ର ଜୀବନଯାତ୍ରା, ତାର impulse (ପ୍ରେରଣା)ରେ ତା'ର ପାରିପାର୍ଶ୍ୱିକ ମଧ୍ୟରେ ବି ଏହି factor (ନୀତି) ଗୁଡିକ ଅନୁପ୍ରବେଶ କରିବ । ସ୍ୱସ୍ତ୍ୟୟନୀ ହେଲା evolution (ବିବର୍ତ୍ତନ) ତଥା becoming (ବିବର୍ଦ୍ଧନ) ପଥରେ ଏକ ସପାରିପାର୍ଶ୍ୱିକ run (ଯାତ୍ରା) । ଏହାଦ୍ୱାରା physical (ଶାରୀରିକ), complex (ବୃତ୍ତି), psychological (ମାନସିକ), environmental (ପାରିପାର୍ଶ୍ୱିକ), material (ନିୟନ୍ତ୍ରିତ) ହେଉଥାଏ । ସବୁନୀତିଗୁଡିକ କିନ୍ତୁ ପାଳନ କରିବାକୁ ହୁଏ, କୌଣସି ଗୋଟିଏ ନୀତି ପାଳନରେ ତ୍ରୁଟି ହେଲେ ବୁଝିବାକୁ ହେବ ମୋର ଏହି ପୁଣ୍ୟବ୍ରତ କ୍ଷୁଣ୍ଣ ହେଲା, ନିଷ୍ଠାର ସଙ୍ଗେ ସର୍ବଦା ସଜାଗ ହୋଇ ଏହା ପ୍ରତି ଲକ୍ଷ୍ୟ ରଖି ଚଳିବାକୁ ହେବ, ନିତ୍ୟ ନିରଖ-ପରଖ କରି ଦେଖିବାକୁ ହେବ, ମୋର ଏହି ବ୍ରତ ଉଦ୍‌ଯାପନରେ କେଉଁଠି ବ୍ୟତିକ୍ରମ ହେଉଛି କି ? - ସେପରି ହେଲେ ସଙ୍ଗେ ସଙ୍ଗେ ଚେଷ୍ଟାକରି ବାସ୍ତବ ଆଚରଣ ଦ୍ୱାରା ସୁଧାରି ନେବାକୁ ହେବ । ଏହିପରି ଚାହୁଁ ଚାହୁଁ ଗୋଟିଏ ନିର୍ଭୁଲ ମଣିଷ ପୁରାପୁରି ଦେବତା ହୋଇଉଠେ । ତା'ର ପାରିପାର୍ଶ୍ୱିକ ମଧ୍ୟ ରଂଜିତ ହୋଇଉଠେ ନୂତନ ରଙ୍ଗରେ । ସ୍ୱସ୍ତ୍ୟୟନୀର ପାଞ୍ଚଟି ନୀତିର କଥା ପୁଣି

କହୁଛି - (୧) ଇଷ୍ଟପୂଜାର ଯନ୍ତ୍ର ବିବେଚନା କରି ଶରୀରଟାକୁ ସୁସ୍ଥ ଓ ସହନପଟୁ କରି ତୋଳିବ । (୨) ଯେଉଁ କାମ ଭଲ ବୋଲି ମନେ ହେବ ତାକୁ ତତ୍କ୍ଷଣାତ୍ କାର୍ଯ୍ୟକାରୀ କରିବ । (୩) ପ୍ରବୃତ୍ତି ଯେତେବେଳେ ଯେଉଁ ଦିଗକୁ ଉଙ୍କି ମାରୁନା କାହିଁକି ଉକ୍ତ ଝୁଙ୍କ୍‌ଟାକୁ ଇଷ୍ଟ-ସ୍ୱାର୍ଥ ପ୍ରତିଷ୍ଠାମୁଖୀ କରିବ । (୪) ପାରିପାର୍ଶ୍ୱିକର ବଞ୍ଚିବା ବଢ଼ିବାକୁ ନିଜର ବଞ୍ଚିବା ବଢ଼ିବା ବୋଲି ମନେ କରି ଇଷ୍ଟାନୁଗ ସେବା ଓ ଯାଜନ ଦ୍ୱାରା ସେମାନଙ୍କୁ ଉଚ୍ଛଳ ଓ ଉଦ୍‌ବର୍ଦ୍ଧିତ ତଥା ଶ୍ରେୟପ୍ରାଣ କରି ତୋଳିବ । (୫) ଏବଂ ନିତ୍ୟ ନବଭଦ୍‌ଭାବନୀ ପ୍ରଚେଷ୍ଟାଭିତରେ ଦେଇ ନିଜର ଆହରଣ ବଢ଼ାଇ ଇଷ୍ଟସ୍ୱାର୍ଥରେ ଯେତେ ବେଶୀ ପାର ନିବେଦନ କରିବ ଏବଂ ତିରିଶ ଦିନ ତିନିଟି ଟଙ୍କା ଇଷ୍ଟ ସକାଶେ ନିବେଦନ କରି ଅବଶିଷ୍ଟାଂଶକୁ ସ୍ୱସ୍ତ୍ୟୟନୀର ଉଦ୍‌ବୃତ୍ତ ତହ ବିଲରେ ମହଜୁତ ରଖିବ । ତଦ୍ୱାରା ସ୍ଥାବର ଇଷ୍ଟୋତ୍ତର ସଂପତ୍ତି କିଣିବ । ଏହି ସଂପତ୍ତିର ଆୟର ଏକ ପଞ୍ଚମାଂଶ ତୁମେ ସେବାୟତ ହିସାବରେ ଗ୍ରହଣ କରିପାର, ଅବଶିଷ୍ଟ ଚାରିଭାଗ ଇଷ୍ଟୋତ୍ତର ସଂପତ୍ତି ସଂପ୍ରସାରଣ କାର୍ଯ୍ୟରେ ଲଗାଇବ । ସବୁ ନୀତିଗୁଡିକ ପାଳନୀୟ - କିଂତୁ ଅର୍ଘ୍ୟ ରଖିବାଟା ଯଦି ଅତୁଟ ଭାବରେ ଚଳାଇ ଯାଅ - ଏପରିକି ବିଶେଷ ଅବସ୍ଥାରେ ଭିକ୍ଷାକରି ମଧ୍ୟ ଯଦି ତାହା ଅବ୍ୟାହତ ରଖାଯାଏ, ତା' ଫଳରେ ଆସ୍ତେ ଆସ୍ତେ ଅନ୍ୟଗୁଡିକ ଅନ୍ୟ ଅଭ୍ୟାସରେ ପରିଣତ ହେଉଥାଏ, ଅବଶ୍ୟ ଯଦି ଆଗ୍ରହ ଥାଏ । ଅନ୍ୟସବୁ ନୀତିଗୁଡିକ ପାଳନ କରିବାକୁ ଚେଷ୍ଟା କରିବ, ଅଥଚ ଅର୍ଘ୍ୟ ରଖିବ ନାହିଁ, ତା'କଲେ କିଂତୁ ହୁଏ ନାହିଁ, ଉସପାଇଁ ହିଁ ଯାହା କିଛି, ତାହା ହିଁ ହେଲା ଅସଲ କଥା - ଏହା ହିଁ ହେଲା ମୂଳ, ତାହାର ବ୍ୟତିକ୍ରମ ହେଲେ ଆଉ ସବୁ ଉପୁଡି ପଡିବ, ମୂଳ ଠିକ୍ ରଖିବାକୁ ହେବ ସର୍ବଦା, ନହେଲେ ସବୁ ନିରର୍ଥକ ହେବ, ସମସ୍ତ ପ୍ରଚେଷ୍ଟା ମଉଳି ପଡିବ । knowledge of time and date (ସମୟ ଓ ତାରିଖର ନିର୍ଭୁଲତା) observe (ପ୍ରତିପାଳନ) କରିବା ଦରକାର । ବହୁଲୋକ ସ୍ୱସ୍ତ୍ୟୟନୀ

properly observe (ଯଥାଯଥ ପରିତିପାଳନ) କରିବା ଫଳରେ କେତେ କ'ଣ ଯେ ହୋଇପାରେ ତାହା ଭାବି ଶେଷ କରାଯାଇପାରେ ନାହିଁ । ସ୍ୱସ୍ତ୍ୟୟନୀର ବଳକା ପାଣ୍ଠିରୁ କେତେ ସ୍ୱସ୍ତ୍ୟୟନୀ ଷ୍ଟେଟ୍ ଗଢ଼ି ଉଠିବ । କେହି ଜଣେ actuary (ହିସାବ ବିଶାରଦ) ଏହାକୁ କହିଛନ୍ତି revolutionary economics (ବିପ୍ଳବୀ ଅର୍ଥନୀତି) ବୋଲି । କୌଣସି emergency (ଜରୁରୀକାଳୀନ ପରିସ୍ଥିତି)ରେ ସ୍ୱସ୍ତ୍ୟୟନୀ ଏଷ୍ଟେଟ୍‌ର ବାର୍ଷିକ ଆୟର ଚାରି ପଞ୍ଚମାଂଶ ଉଠାଇ ନେଲେ ଆଉ tax (କର ଧାର୍ଯ୍ୟ) ବସାଇବାକୁ ହେବ ନାହିଁ । ଇଷ୍ଟ ଓ ପୂର୍ତ୍ତବିଭାଗୀୟ କର୍ମ ପାଇଁ ଅଫୁରନ୍ତ ସମ୍ପଦର ବନ୍ୟା ବହିଯିବ । ଦେଶରେ ଆଉ ହା-ଅନ୍ନ ଘୋଟିବ ନାହିଁ, ଜଗତ ଅମୃତମୟ ହୋଇଯିବ ।"[୧୦]

ଶ୍ରୀଶ୍ରୀଠାକୁରଙ୍କର ଏହି ଅଭିନବ ପରିକଳ୍ପନା କଥା ଭାବି ବସିଲେ ଯୁଗପତ୍ ଆନନ୍ଦ ଓ ବିସ୍ମୟରେ ମନ ଭରିଯାଏ । କେତେ ସୁଦୂର ପ୍ରସାରୀ ତାଙ୍କ ପରିକଳ୍ପନା ! ଏହି ଅଭିନବ ଯୁଗୋପଯୋଗୀ ଉଦ୍‌ଭାବନ ଓ ମନୋବୈଜ୍ଞାନିକ ସାଧନ ପଦ୍ଧତିର ପଟାନ୍ତର ନାହିଁ । ସ୍ୱସ୍ତ୍ୟୟନୀ ଯଦି କେହି ଠିକ୍ ଭାବରେ ପାଳନ କରେ, ତାହାର ସହଜାତ-ସଂସ୍କାର ସବୁ ଫୁଟି ଉଠିବ ହିଁ ଉଠିବ । ହଜାର ହଜାର ବର୍ଷର ପିତୃ-ପୁରୁଷଙ୍କ ରକ୍ତଧାରା ଆମ ଭିତରେ ପ୍ରବାହିତ । ପିତୃପୁରୁଷଙ୍କ ଗୁଣରାଶି ଆମ ଭିତରେ ସୁପ୍ତଭାବେ ଅଛି । ଯଜନ-ଯାଜନ-ଇଷ୍ଟଭୃତି ଏବଂ ସ୍ୱସ୍ତ୍ୟୟନୀ ଓ ସଦାଚାର ପାଳନ ଭିତର ଦେଇ ସୁଗୁଣ ଗୁଡିକ ଚରିତ୍ରରେ ଫୁଟିଉଠିଥାଏ ଏବଂ କୁ-ଗୁଣଗୁଡିକ କ୍ରମେ କ୍ରମେ ଦୂରୀଭୂତ ହୁଏ । ଯାହାଫଳରେ ବଂଶ-ପରଂପରାକ୍ରମେ ସୁଗୁଣ ଗୁଡିକ ପୁଷ୍ଟ ହୋଇଥାଏ ।

ସ୍ୱସ୍ତ୍ୟୟନୀ, ମାନେ - ସୁ+ଅସ୍ତି+ଅୟନ (ଇ) । ଅର୍ଥାତ୍ ଭଲରେ ରହିବାର ମାର୍ଗ । ସ୍ୱସ୍ତ୍ୟୟନୀ ଠିକ୍‌ଭାବେ ପାଳନ କରୁଥିବା ବ୍ୟକ୍ତି ସପାରିପାର୍ଶ୍ୱିକ ନିଶ୍ଚୟ ଭଲରେ ରହିବ ହିଁ ରହିବ । ଶ୍ରୀଶ୍ରୀଠାକୁର କହୁଛନ୍ତି - "....ସ୍ୱସ୍ତ୍ୟୟନୀ ପରି ଏତେ powerful (ଶକ୍ତିମାନ୍) ଆଉ

କିଛି ଦେଖିନାହିଁ । ସ୍ୱସ୍ତ୍ୟୟନୀର ପାଞ୍ଚଟି ନୀତିଗୁଡିକ ଯିଏ ଯେତେ ପାଳନ କରିବ, ତା'ର strength (ଶକ୍ତି) ବି ହେବ ସେତେ । ଦୁନିଆର ସବୁକିଛି ଏହାରି ଭିତରେ ରହିଯାଇଛି । ଯେ ଯେତେଦୂର ପାଳନ କରିବେ, ସେ ସେତେଟା ବୁଝିବେ । ମନୁ ସଂହିତାରେ ଅଛି, -

"ଇଦଂ ସ୍ୱସ୍ତ୍ୟୟନଂ ଶ୍ରେଷ୍ଠମିଦଂ ବୁଦ୍ଧିବିବର୍ଦ୍ଧନମ୍
ଇଦଂ ଯଶସ୍ୟମାୟୁଷ୍ୟମିଦଂ ନିଃଶ୍ରେୟସଂ ପରମ୍ ।"

ସ୍ୱସ୍ତ୍ୟୟନୀ ପରମପିତାଙ୍କ ଦାନ । ଏତେ ପରିଷ୍କାର କରି ଆଗରୁ କେଉଁଠି ଦିଆ ନଥିଲା । ବିଧିଗୁଡିକ ଏକତ୍ର ମାଳାକାରରେ ଗୁନ୍ଥି ପରମପିତା ଏଥର ଆମମାନଙ୍କ ସମସ୍ତଙ୍କ ସାମନାରେ ରକ୍ଷାକବଚ ହିସାବରେ ଉପହାର ଦେଇଛନ୍ତି । ଅନେକେ ହିଁ ଭଲଭାବେ କରନ୍ତିନି, ତେଣୁ ଏହାର ମହିମା ବି ଉପଲବ୍ଧି କରିପାରନ୍ତି ନାହିଁ ।"[୯୧]

'ସ୍ୱସ୍ତ୍ୟୟନୀ' ସଂପର୍କରେ ଆଲୋଚନା କଲାବେଳେ ଶ୍ରୀଶ୍ରୀଠାକୁରଙ୍କ ଶ୍ରୀମୁଖ ନିଃସୃତବାଣୀ 'ଅନୁଶ୍ରୁତି' (୧ମ ଖଣ୍ଡ)ରୁ ଉଦ୍ଧାର ନକରିଲେ ବିଷୟଟି ଅସଂପୂର୍ଣ୍ଣ ରହିଯିବ । ସ୍ୱସ୍ତ୍ୟୟନୀର ପଞ୍ଚନୀତି ସଂପର୍କରେ ଶ୍ରୀଶ୍ରୀଠାକୁର ସ୍ୱସ୍ତ୍ୟୟନୀର ପଞ୍ଚନୀତି ସଂପର୍କରେ ବାଣୀପ୍ରଦାନ କରିଛନ୍ତି -

୧) "ଶ୍ରୀବିଗ୍ରହ ମନ୍ଦିର ଭାବି
ଯତ୍ନ କର ଶରୀରଟାକୁ
ସହନପଟୁ ସୁସ୍ଥ ରଖ
ବିଧିମାଫିକ୍ ପାଳ ତାକୁ ।"

୨) "ପ୍ରବୃତ୍ତି ତୋର ଯେବେ ଯେପରି
ଯେଉଁ ଭାବେ ହିଁ ମାରୁ ଉଙ୍କି
ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାରେ
ଘୁରାଇଦେବୁ ତା'ର ସେ ଝୁଙ୍କି ।"

୩) "ଯେଉଁ କାର୍ଯ୍ୟେ ଯା' ଭଲ ବୋଲି
ଆସିବ ମନେ ତତ୍‌କ୍ଷଣାତ୍
ହାତକଲମେ କରିବୁରେ ତାହା
ରୋଧକରି ତା'ର ସବୁ ବ୍ୟାଘାତ ।"

୪) "ପଡ଼ା-ପଡ଼ୋଶୀଙ୍କ ବଞ୍ଚିବା ବଢ଼ିବାରେ
ରଖରେ ତୁଇ ସ୍ୱାର୍ଥଟାଣ
ସେମାନଙ୍କ ଭଲ ଚେତାଇ ତୋଳ
ଇଷ୍ଟାନୁଗ କରି ପ୍ରାଣ ।"

୫) "ନିଜର ସେବାର ଆଗେ ରୋଜ ହିଁ
ଶକ୍ତିମତ ଯେପରି ପାରିବୁ
ଇଷ୍ଟ-ଅର୍ଘ୍ୟ ଭକ୍ତିଭରେ
ଶୁଚିରେ ନିବେଦନ କରିବୁ ।
ଏଇ ନିୟମେ ନିତ୍ୟଦିନ
ପ୍ରତି କାର୍ଯ୍ୟରେ ସର୍ବକ୍ଷଣ
ସ୍ୱସ୍ତ୍ୟୟନୀର ନିୟମଗୁଡିକ
ପାଳିବୁ ଦେଇ ଅତୁଟ ମନ ।
ତିରିଶ ଦିନ ପୂରି ଗଲେ ହିଁ
ମାସକ ଅର୍ଘ୍ୟ ସଦକ୍ଷିଣାରେ
ଇଷ୍ଟଭୋଜ୍ୟ ପଠାଇ ବାକୀ
ମହଜୁତ ରଖିବୁ ବର୍ଦ୍ଧନାରେ ।
ଚିରଜୀବନ ଏପରି କରି
ଇଷ୍ଟସ୍ଥାନେ ହୋଇ ନିରତ
ତାକୁ ହିଁ କୁହେ ସ୍ୱସ୍ତ୍ୟୟନୀ
ସବୁଠୁଁ ଶ୍ରେଷ୍ଠ ମହାନ୍ ବ୍ରତ ।"

ସ୍ୱସ୍ତ୍ୟୟନୀ ବ୍ରତ ଗ୍ରହଣ ଦିନଠାରୁ ପ୍ରତ୍ୟହ ଜପ-ଧ୍ୟାନ ଓ ଇଷ୍ଟଭୃତି ନିବେଦନ ପରେ ସ୍ୱସ୍ତ୍ୟୟନୀର ଅର୍ଘ୍ୟାଞ୍ଜଳୀ ମନ୍ତ୍ର ପାଠକରି ଇଷ୍ଟଦେବତାଙ୍କୁ ଆହାର୍ଯ୍ୟ ଉପଯୋଗୀ ଭୋଜ୍ୟ ବା ତଦନୁକଳ୍ପେ ଅର୍ଥ ନିବେଦନ କରିବାକୁ ହେବ । ସ୍ୱସ୍ତ୍ୟୟନୀର ଉଦ୍‌ବୃତ୍ତ ଅର୍ଥ ଯେପରି ନିଜଇଚ୍ଛାନୁସାରେ ବ୍ୟୟ କରାନଯାଏ ବା ଧାର ଇତ୍ୟାଦି ଦିଆନଯାଏ । ଇଷ୍ଟ ବା ଇଷ୍ଟଙ୍କ ଅବର୍ତ୍ତମାନରେ ଆଚାର୍ଯ୍ୟଦେବଙ୍କ ନିର୍ଦ୍ଦେଶରେ ଯାହାକିଛି କରାଯାଇ ପାରେ । ଜନୈକଭାଇ ସ୍ୱସ୍ତ୍ୟୟନୀ ଅର୍ଘ୍ୟ ମଧ୍ୟରେ ମୁଦି ରଖି କିଛି ଟଙ୍କା ନେଇଥିଲେ । ସେ କଥା ଶ୍ରୀଶ୍ରୀଠାକୁରଙ୍କୁ ଜଣାଇବାରୁ ଠାକୁର କହିଲେ - "ତା' କରନା, ସେଥିରେ energy (ଶକ୍ତି) ନଷ୍ଟ ହୋଇଯାଏ ।" ବିପଦରେ ପଡି କରିବାକୁ ହେଲା ଶୁଣି ଶ୍ରୀଶ୍ରୀଠାକୁର ପୁଣି କହିଲେ, "ବିପଦରେ ତ ପଡେ ମଣିଷ । କିଂତୁ ବିପଦରେ ପଡି ସେ କାମ କରିବାକୁ ଗଲ କାହିଁକି ? ତୁମ ସ୍ୱସ୍ତ୍ୟୟନୀ ଜମାରେ ଯଦି ଟଙ୍କା ନଥାନ୍ତା ତା'ହେଲେ କ'ଣ କରିଥାନ୍ତ ? ଏହି କରିବାରେ କିଂତୁ ତୁମର କର୍ମଶକ୍ତି ବଢ଼ିଲାନି । ବର୍ତ୍ତମାନ ପ୍ରାୟଶ୍ଚିତ କର ।"[୧୨]

ସ୍ୱସ୍ତ୍ୟୟନୀର ଉଦ୍‌ବୃତ୍ତ ଅର୍ଥକୁ ବର୍ତ୍ତମାନ ଠିକ୍ ଭାବେ କାର୍ଯ୍ୟରେ ଲଗାଇବା ବା ସ୍ୱସ୍ତ୍ୟୟନୀର ସ୍ଥାବର ସଂପତ୍ତି କରିବାରେ କେତେକ ଅସୁବିଧା ରହିଛି । ଏଣୁ, ପରମପୂଜ୍ୟପାଦ ଶ୍ରୀଶ୍ରୀବଡ଼ଦା', ଏହାକୁ 'ଶ୍ରୀମନ୍ଦିର' ପ୍ରକଳ୍ପ ପାଇଁ ଜମା ଦେବାକଥା କହି ଆମ୍ଭମାନଙ୍କୁ ଅନେକ ନିଶ୍ଚିନ୍ତ କରିଛନ୍ତି । କିପରି କ'ଣ କରାଯିବ ଭବିଷ୍ୟଂତ ପାଇଁ ତାହା ପରମପୂଜ୍ୟପାଦ ଆଚାର୍ଯ୍ୟ ଦେବଙ୍କ ନିର୍ଦ୍ଦେଶକୁ ହିଁ ମାନିବାକୁ ହେବ ।

" ସତାଂ ସାଧୁନାଂ ଯ ଆଚାରଃ ସ ସଦାଚାରଃ", ପ୍ରାତଃକାଳରୁ ରାତ୍ରିରେ ନିଦ୍ରାଗତ ହେବା ପର୍ଯ୍ୟନ୍ତ ଯେଉଁ ଆଚାର ଆଚରଣ, ସେ ସବୁକୁ ଠିକ୍ ଭାବେ ନିୟନ୍ତ୍ରିତ, ଶୁଦ୍ଧ, ପବିତ୍ର କରିବା ହିଁ ସଦାଚାର । ସେଥିପାଇଁ ଆଚାର ଓ ଆଚରଣ ଠିକ୍ ନରହିଲେ କାହିଁରେ କିଛି ହୁଏ ନାହିଁ । କୁହାଯାଇଛି - "ଆଚାରହୀନଂ ନ ପୁନନ୍ତି ବେଦାଃ ।" ଅର୍ଥାତ୍, ଆଚାରହୀନ ଲୋକକୁ ବେଦ ମଧ୍ୟ ପବିତ୍ର କରିପାରେ ନାହିଁ ।

ଯେଉଁ ଆଚାର ଆଚରଣ ପାଳନ ମାଧ୍ୟମରେ ଶରୀର, ମନ, ପ୍ରାଣ, ପରିବାର ଓ ପରିବେଶର ଶୁଦ୍ଧତା ଓ ସୁସ୍ଥତା ଆସେ, ସେହି ସାତ୍ତ୍ୱିକ ଆଚାରକୁ ସଦାଚାର କୁହାଯାଏ । ମନେ ରଖିବାକୁ ହେବ ଯେ ସଦାଚାରମାନେ ଶୁଚିବାଇ-ଗ୍ରସ୍ତ ହେବା ନୁହେଁ । ସଦାଚାର ପାଳନ ଫଳରେ ସ୍ନାୟୁ-ତନ୍ତ୍ରୀର ସୂକ୍ଷ୍ମ ସଂବେଦନ ପ୍ରବଣତା ବୃଦ୍ଧି ପାଏ, ପୂର୍ବରୁ ଯାହା ବୋଧ-ବହିର୍ଭୂତ ଥିଲା, ସେସବୁ ବୋଧ ମଧ୍ୟକୁ ଆସିଥାଏ । ସଦାଚାର ତିନି ପ୍ରକାର - ଆଧ୍ୟାତ୍ମିକ, ମାନସିକ ଓ ଶାରୀରିକ ।

ଏକ-ନିଷ୍ଠ ଇଷ୍ଟାନୁରାଗ ହେଲା ଆଧ୍ୟାତ୍ମିକ ସଦାଚାର । ବହୁନୈଷ୍ଠିକ ହୃଦୟରେ ଭକ୍ତି ଆସିପାରେନି । ଇଷ୍ଟ-ଗୁରୁଙ୍କ ପ୍ରତି ଅଚ୍ୟୁତ ଭଲପାଇବା ଏବଂ ତତ୍‌ପ୍ରତିଷ୍ଠା କର୍ମରେ ବ୍ୟାପୃତ ରହିବାରେ ଆଧ୍ୟାତ୍ମିକ ସଦାଚାରର ପ୍ରତିଫଳନ ଦେଖିବାକୁ ମିଳେ । ଅତଏବ, ଏକମୁଖୀ ଆଦର୍ଶାନୁଗ ଗତିଶୀଳତା ହିଁ ଆଧ୍ୟାତ୍ମିକ ସଦାଚାର ।

ସତ୍‌ଚିନ୍ତା, ସତ୍‌କଥନ, ସର୍ବଜୀବଜଗତର ମଙ୍ଗଳ କାମନା, ସଦ୍‌ବ୍ୟବହାର, ପରନିନ୍ଦା ବିଷୟ ଜଡିତ ଚିନ୍ତା ତଥା କଥନ ପରିହାର ଇତ୍ୟାଦି ମାନସିକ ସଦାଚାରର ଅନ୍ତର୍ଭୁକ୍ତ । 'ଇଷ୍ଟପ୍ରସଙ୍ଗେ'ରେ ଶ୍ରୀଶ୍ରୀବଡ଼ଦା' କହିଛନ୍ତି - "ପ୍ରତ୍ୟହ ପ୍ରତ୍ୟୁଷରେ ଅନୁରାଗ ସହିତ ଇଷ୍ଟଭୃତି କରିବା, ପିତାମାତା ଓ ଗୁରୁଜନମାନଙ୍କୁ ଭକ୍ତି କରିବା, ଛୋଟମାନଙ୍କୁ ପ୍ରୀତି ଚକ୍ଷୁରେ ଦେଖିବା, ସମସ୍ତଙ୍କର କଲ୍ୟାଣକାମନା କରିବା, ନିଃସ୍ୱାର୍ଥ ସେବାଦେବା ଇତ୍ୟାଦି । ଏଗୁଡିକ ମନର ସଦାଚାର । ଏଗୁଡିକ କରିଲେ କ'ଣ ହୁଏ ? - ମନ ଭଲ ରୁହେ । ଦୈହିକ ସଦାଚାର ପାଳନ କରି ଚାଲିଲେ ଦେହ ସୁସ୍ଥ ରୁହେ । ଦୈହିକ ଓ ମାନସିକ ଉଭୟ ସଦାଚାର ହିଁ ଆମ୍ଭମାନଙ୍କର ପାଳନ କରିବା ଦରକାର । (ଟିକିଏ ରହି) ସବୁ ବିଷୟରେ strong (ସବଳ) ହେବାକୁ ହୁଏ । ଯେଉଁଟା ଭଲବୋଲି ଜାଣିବା ସେଇଟା କରିବା ହିଁ । ଅନ୍ୟାୟକୁ କେବେ ବି ସମର୍ଥନ କରିବାକୁ ହୁଏନି ।"[୯୩]

ଆହାର, ବିହାର, ସ୍ନାନ-ପାନ, ଚଲା-ବୁଲା, ପୋଷାକ-ପରିଚ୍ଛଦ, ବିଛଣା, କପଡା, ଇତ୍ୟାଦିର ଶୁଚିତା ରକ୍ଷା କରି ଚଳିବା ଶାରୀରିକ ସଦାଚାର । ପାଇଖାନା ସାରି (ମଳତ୍ୟାଗ ପରେ) ସାବୁନ ଇତ୍ୟାଦି ଦେଇ ଭଲ ଭାବେ ହାତ ଧୋଇବା, ପାଇଖାନାକୁ ଯାଇଥିବା ଗାମୁଛା, ଲୁଗା ଇତ୍ୟାଦି ଧୋଇବା, ପରିସ୍ରା କରି ସାରି ପାଣିରେ ଶୌଚ ହେବା । ନାକ, ମୁହଁ, ପାଟିରେ ହାତ ଦେଲେ ହାତ ଧୋଇବା, ପାଟି ଭିତରେ ହାତ ଦେବା ପୂର୍ବରୁ ଓ ପରେ ହାତ ଧୋଇବା, ଅନ୍ୟର ବ୍ୟବହୃତ ଜିନିଷ, ଯଥା - ଚିରିଣି, ପାନିଆ, ଟୁଥ୍‌ବ୍ରସ୍, ବିଛଣା, ତକିଆ, ଜାମା-କପଡା ଇତ୍ୟାଦି ବ୍ୟବହାର ନ କରିବା ଇତ୍ୟାଦି ଶାରୀରିକ ସଦାଚାର ମଧ୍ୟରେ ରହିଛି ।

ଶ୍ରୀଶ୍ରୀଠାକୁର କହୁଛନ୍ତି - "ପ୍ରତ୍ୟେକଟି ସଦାଚାରର hygienic effect (ସ୍ୱାସ୍ଥ୍ୟୋନ୍ନୟନକାରୀ ଫଳ) ଅଛି । ଅଜ୍ଞାତକୁଳଶୀଳ କାହାରି ହାତରେ ଖାଇବା ଉଚିତ୍ ନୁହେଁ । ଶରୀର ପାଇଁ ଖାଇବା ପିଇବା ସମ୍ବନ୍ଧରେ ବିଶେଷ ସାବଧାନ ହେବା ଦରକାର । କାହାର ଯେ କି disease (ରୋଗ) ଅଛି ତାହା ତ ଜଣା ନାହିଁ । ଜଣେ ହୁଏତ ନିଜେ immune (ସଂକ୍ରମଣମୁକ୍ତ), କିଂତୁ ତା'ହାତରେ କିଛି ଖାଇବା ଫଳରେ ଆଉ ଜଣେ ହୁଏତ ସଂକ୍ରମିତ ହେଲା । ସ୍ୱପାକ ହିଁ ଶ୍ରେୟଃ । ଦୋକାନରେ ନ ଖାଇବା ଭଲ । ସଦାଚାର ବିହୀନ ବିପ୍ର ହାତରେ ମଧ୍ୟ ଖାଇବା ଉଚିତ୍ ନୁହେଁ । ଅନ୍ୟର ବିଛଣାରେ ଶୋଇବା ଉଚିତ୍ ନୁହେଁ - ଅନ୍ୟ ସଙ୍ଗେ ଶୋଇବା ଠିକ୍ ନୁହେଁ । ଅନ୍ୟର ଲୁଗାପଟା ପିନ୍ଧିବା ଉଚିତ୍ ନୁହେଁ । ଗନେରିଆ ରୋଗୀର ଲୁଗାପଟା ପିନ୍ଧି ଗନେରିଆ ରୋଗ ଭୋଗ କରିବାର ଲୋକଙ୍କୁ ମୁଁ ଜାଣେ । ସେଥରକ ମେହେନ୍ତରଙ୍କ ସଙ୍ଗେ ଏକାଠି ଖାଇଲେ, କିଂତୁ ତାହାଫଳରେ କେତେ ଜଣ କେତେ diseasecamy (ରୋଗଗ୍ରହଣ) କରିଛନ୍ତି ତା'ର କିଛି ଠିକ୍ ଅଛି ? ପିଲାଦିନୁ ଭାଇ ଭାଇ ଏକ ସଙ୍ଗେ ଖାଇ ମଧ୍ୟ ଏକାଠି ରହି ପାରୁନାହାଁନ୍ତି, ଆଉ ଦିନେ ଦୁଇଦିନ ଏକାଠି ଖାଇଲେ ଯଦି ମିଳନ ହେଉଥାନ୍ତା ତା'ହେଲେ ତ ଆଉ କଥା ନଥିଲା ।"[୯୪]

ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଦେଖୁଁ -

"ମାଛ ମାଂସ ଖାସ୍‌ନେ ଆର୍
ପିଆଜ, ରସୁଣ, ମାଦକ ଛାଡ଼ ।"
"ଆମିଷେ ବିଧାନ ଉତ୍ତେଜିତ
ଅଯଥା ହୁଏ ଜର୍ଜ୍ଜରିତ ।"

ଆମିଷାହାର ସ୍ୱାସ୍ଥ୍ୟପକ୍ଷରେ କ୍ଷତିକାରକ ଏବଂ ଆଧ୍ୟାତ୍ମିକ ସାଧନାର ଅନ୍ତରାୟ । ବହୁମନୀଷୀ, ସାଧୁ-ସନ୍ଥ, ମହାପୁରୁଷଗଣ ଏହାକୁ ବର୍ଜନ କରିବାର କଥା ବାରମ୍ବାର କହି ଆସିଛନ୍ତି ।

ମାତୃଜାତି ମଧ୍ୟ ସେମାନଙ୍କ ମାସିକ ଋତୁ କାଳରେ ସଦାଚାର ପାଳନପୂର୍ବକ ସବୁଥିରୁ ଟିକେ ଦୂରେଇ ରହିବା ଦରକାର । ଏହି ପ୍ରସଙ୍ଗରେ ଶ୍ରୀ ଶ୍ରୀ ଠାକୁରଙ୍କ ବାଣୀଟି ଅତ୍ୟନ୍ତ ପ୍ରଣିଧାନର ବିଷୟ :-

"ଋତୁମତୀ ନାରୀ ହେଲେ ହିଁ
ତିନି କିମ୍ବା ଚାରିଟି ଦିନ
ଖାଇବା, ଶୋଇବା ଜିନିଷପତ୍ର
ଛୁଇଁବା ନୁହେଁତ ସମୀଚୀନ
ଅନ୍ତରୁଦ୍ଧ ସଞ୍ଚିତ ବିଷ
ଶୋଣିତ ସ୍ରାବେ ଧୌତ ହୁଏ
ଛୁଇଁବା ନାଡ଼ିବା ସ୍ପର୍ଶଦୋଷେ
ତାହା କିନ୍ତୁ ସଞ୍ଚରିଥାଏ ।
ସୁସ୍ଥ ଦେହେ ଏହି ବିଷରେ
ଦୁଷ୍ଟ ରୋଗର ହୁଏ ଆବାସ
ପରିବାରଟି ଘେରି ଧରେ
ଫଳେ ମୂଳେ ହୁଏ ନିକାଶ ।"[୯୫]

ଅତଏବ, ସଂସାରରେ ମାଆମାନେ ଏହି ବିଷୟରେ ଅତ୍ୟନ୍ତ ସଚେତନ ରହିବା ଆବଶ୍ୟକ । ଯଦି ସେ ତାଙ୍କ ସ୍ୱାମୀ ଓ ପିଲାମାନଙ୍କର ତଥା ପରିବାର ସୁସ୍ୱାସ୍ଥ୍ୟ ଓ କଲ୍ୟାଣ କାମନା କରୁଥାଆନ୍ତି, ତା'ହେଲେ ଏହି ବିଷୟପ୍ରତି ନିଜେ ନିଜ ତରଫରୁ ଅଧିକ ସଚେତନ ରହିବା ଦରକାର । କାରଣ, ଯୌନଜୀବନରେ ସଦାଚାରୀ ନହେଲେ ସୁସନ୍ତାନ ଲାଭ କରିବା ସୁଦୂର ପରାହତ । ଶ୍ରୀଶ୍ରୀଠାକୁରଙ୍କ ବାଣୀ ମଧ୍ୟରେ ଅଛି –

"ସଜୀବ ଯେପରି ଯୌନ ଜୀବନ
ସୁନ୍ଦର ସଦାଚାରୀ
ଦୀପ୍ତକୃତୀ ସେପରି ସେ ଜନ
ଆୟୁର ଅଧିକାରୀ ।"[୯୬]

ସଦାଚାର ସଂପର୍କରେ ସଂକ୍ଷେପରେ ଆଲୋଚନା କରାଯାଇଛି । ସବୁକିଛି ମୂଳରେ ରହିଛି ଇଷ୍ଟ-ନିଷ୍ଠା, ଗୁରୁ-ଗତ ପ୍ରାଣ, ଯଜନ-ଯାଜନ, ଇଷ୍ଟଭୃତି, ସ୍ୱସ୍ତ୍ୟୟନୀ ଓ ସଦାଚାର – ଏହି ପଞ୍ଚନୀତି ପାଳନ ମଧ୍ୟରେ ଇଷ୍ଟପ୍ରାଣତା ଉତ୍ତରୋତ୍ତର ବୃଦ୍ଧି ହୁଏ । ଶ୍ରୀଶ୍ରୀଠାକୁର କହୁଛନ୍ତି –

"ଇଷ୍ଟ ନିଶାରେ ତୁଷ୍ଟପ୍ରାଣ, ସଦାଚାରୀ ହେଲେ
ମନର ସ୍ୱାସ୍ଥ୍ୟ ଜୀବନଶକ୍ତି, ଅଟୁଟ ଭାବେ ହିଁ ଚଳେ ।"

ପରିଶେଷରେ ଶ୍ରୀଶ୍ରୀଠାକୁରଙ୍କ ଅମୋଘ ନିର୍ଦ୍ଦେଶ ଯେପରି ସର୍ବଦା ମନେ ରୁହେ –

"ମୋର କଥାଗୁଡିକ ଯଦି ତୁମର
କେବଳ କଥା ଓ ଚିନ୍ତାର ଖୋରାକ ମାତ୍ର ହୁଏ –
କରିବା ବା ଆଚରଣ ଭିତର ଦେଇ
ସେଗୁଡିକୁ ଯଦି ବାସ୍ତବରେ
ଫୁଟେଇ ତୋଳି ନପାର
ତେବେ ପାଇବା ଯେ ତୁମର
ତମସାଚ୍ଛନ୍ନ ରହିଯିବ
ତା' କିନ୍ତୁ ଅତି ନିଶ୍ଚୟ ।"

## ଶୁଭମସ୍ତୁ

"ଇଷ୍ଟଭୃତିକୁ ଅସ୍ଖଳିତ ରଖ,
ଏପରି କୌଣସି ଦିନ
କେବେ ବି ନ ହୁଏ
ଯେଉଁଥିରେ ତୁମର ଏଇ ବ୍ରତ
ଭାଙ୍ଗିଯାଏ, –

– ଏକମାତ୍ର ଅସୁସ୍ଥତା
ଯେଉଁଥିରେ ତୁମେ ଏକ୍‌ଦମ୍ ଅପାରଗ ହୁଅ
ଏହାଛଡ଼ା, –
କୌଣସି କିଛି କରିବା ପୂର୍ବରୁ ହିଁ
ଇଷ୍ଟଭୃତିକୁ
ଶିଷ୍ଟ ସୁଚାରୁ ଭାବେ
ନିଷ୍ପାଦନ କରିବ୍ ହିଁ କି କରିବ –
ବର୍ଦ୍ଧନ-ଔତ୍ସୁକ୍ୟ ନେଇ;
ଜୀବନର ପ୍ରାତ୍ୟହିକ ଉଷାରେ
ପ୍ରତ୍ୟହର ଏହି ପ୍ରଥମ
ଅର୍ଘ୍ୟ ନିବେଦନ
କ୍ରମେ କ୍ରମେ ତୁମକୁ
ଅଭ୍ୟାସ ଅନୁଚର୍ଯ୍ୟାରେ
ଏପରି ନିଷ୍ଠା-ନିବଦ୍ଧ କରି ତୋଳିବ –
ଯେଉଁଥିରେ ତୁମେ

ତୁମର ଜୀବନକୁ
ପ୍ରୀତି ଉଦ୍ୟମରେ
ଉଦାତ୍ତ ନ ରଖି ହିଁ ପାରନା;
ଯେତେବେଳେ
ଏପରି ଅବସ୍ଥା ଆସିବ,
ସେତେବେଳେ ହିଁ ବୁଝି –
ତୁମର ବ୍ୟକ୍ତିତ୍ୱଟା
କ୍ରମଶଃ ହିଁ ରଙ୍ଗିଳ ହୋଇ ଉଠୁଛି –
ଏଇ ଇଷ୍ଟାର୍ଥ ଅନୁନୟନରେ,
ଯାହାଫଳରେ –
ତା' ନାମ ବିପର୍ଯ୍ୟୟର ଭିତର ଦେଇ ବି
ତୁମ ଜୀବନଟାକୁ
ପରିଚାଳନା କରିବ,
ଜୀବନର
ଏଇ ଉଦାତ୍ତ ଆବେଗ
ତୁମର ବ୍ୟକ୍ତିତ୍ୱକୁ
ଏପରି ଭାବରେ
ନିୟନ୍ତ୍ରିତ କରି ଚାଲିବ –
ତୁମେ ହଜାଇ ବିପଦରେ ବି
ସ୍ୱସ୍ତିହରା ହେବନି;
ବ୍ୟତିକ୍ରମ କିନ୍ତୁ
ବ୍ୟତିକ୍ରମକୁ ହିଁ ନେଇ ଆସେ,

ତେଣୁ, ଯେଉଁଥିରେ
କୌଣସି ପ୍ରକାରରେ ହିଁ
ବ୍ୟତିକ୍ରମ ନ ଆସେ –
ସେଥିପାଇଁ ଇଷ୍ଟଭୃତିକୁ

ତୁମ ଜୀବନର
ପ୍ରତ୍ୟହିକ ଅଭିନନ୍ଦନାର
ସ୍ୱସ୍ତି-ଅର୍ଘ୍ୟ କରି ନିଅ –
ଅଟୁଟ ନୈପୁଣ୍ୟରେ;

ଆଉ, ସଙ୍ଗେ ସଙ୍ଗେ
ଅସ୍ଖଳିତ ନିଷ୍ଠାର ସହିତ
ଆନୁଗତ୍ୟ ଓ କୃତି ସମ୍ବେଗକୁ
ସୁଦୃଢ଼ କରି ତୋଳି ରଖ –
ଶ୍ରମପ୍ରିୟ ତତ୍ପରତାରେ,
ଯେଉଁଥିରେ ଏଇ ତାହା
ତୁମର ସତ୍-ସନ୍ଦୀପୀ ଅନୁପୋଷଣୀ
ଲୋକଚର୍ଯ୍ୟାକୁ
କ୍ରମଶଃ
ଆହୁରିରୁ ଆହୁରି
ବିସ୍ତୃତ କରି ତୋଳିଥାଏ,

ଏଇ ଇଷ୍ଟଭୃତି-ଆଚାର
ତୁମେ ଯେପରି କରି ପାଳନ କର, –
ସେପରି କରି ହିଁ
ଶିଷ୍ଟ ଉଦାତ୍ତ

ଆବେଗଭରା ପ୍ରବଚନ,
ଶିଷ୍ଟ ସତର୍କ ଅନୁଚଳନ
ତୁମକୁ
ବ୍ୟାପ୍ତିରେ
ସମୃଦ୍ଧ କରି ତୋଳି ତୋଳି
ତୁମର ବ୍ୟକ୍ତିତ୍ୱଟାକୁ
ସମୃଦ୍ଧିଶାଳୀ କରି ତୋଳିବ, –
ମନେରଖ;
ଟିକିଏ ବି ସ୍ଖଳିତ ହୁଅନା,
ତୁମର ଆଚାର-ବ୍ୟବହାର,
ଚାଲି-ଚଳନ
ଲୋକହିତୀ ସ୍ୱସ୍ତିଚର୍ଯ୍ୟା
ସ୍ନିଗ୍ଧ କଠୋରତାର
କୃତି-ଉଦ୍ଦୀପନାରେ
ତୁମ ଅନ୍ତରରେ ଯେପରି
ସ୍ୱତଃ ହିଁ ବସବାସ କରେ –
ସକ୍ରିୟ ଭାବେ;
ଏପରି କରି
କ୍ରମଶଃ ହିଁ ତୁମେ
ଆହୁରିରୁ ଆହୁରି
ଉଦ୍ଦୀପ୍ତ ହୋଇଉଠ;
ପୁଣି କୁହେ –

କି ଅନ୍ତରେ
କି ବାହାରେ,
କୌଣସି ରକମରେ
ଇଷ୍ଟଭୃତି-ବ୍ରତଯାଗରୁ
କୌଣସିମତେ ସ୍ଖଳିତ ହୁଅନା,
କରିଚାଲ –
ଅସ୍ଖଳିତ ଉଦ୍ଦୀପ୍ତ ନିଷ୍ଠାନେଇ
ପ୍ରବୃଦ୍ଧ ଉର୍ଜ୍ଜନା ନେଇ,
ବ୍ୟକ୍ତିତ୍ୱକୁ
ପ୍ରସାରିତ କରି କରି;
ତା'ପରେ,
ନିଜ ଆଡ଼କୁ ଚାହିଁ ଦେଖ –
କ'ଣ କରୁଛ,
ଆଉ, କ'ଣ କରି ନ ପାରୁଛ,
ଏପରି କରି ସତ୍-କିଛି
ଯାହା କରିଛ –
ତାକୁ ଆହୁରି ପୂର୍ଣ୍ଣ କରି ତୋଳ,
ଯାହା ନ ପାରୁଛ
ତାକୁ
ପାରଗଣରେ ସୁଧୀ କରି ତୋଳ –
ହାତ କଲମରେ
ସୁସନ୍ଦୀପନାରେ;
ଏହି ଅନୁଶାସନଧାରା ହିଁ ହେଉଛି –
ତାଙ୍କର ଆଶିଷ,

ଏହି ଆଶିଷ
ଯେତେ ହିଁ ତୁମଠାରେ
' ଶକ୍ତ ଓ ସମୃଦ୍ଧ ହୋଇ ଉଠିବ –
ଜୀବନ-ଉଦ୍ଦୀପନା ନେଇ, –
ଉଦ୍ଦୀପ୍ତି ପଥରେ
ତୁମେ ମଧ୍ୟ ଚାଲୁଥିବ;
ଘାବଡ଼ି ଯାଅନା,
ଭୁଲି ଯାଅନା,
ଲୋକଚର୍ଯ୍ୟା ଅନୁବେଦନାକୁ
ପରିତ୍ୟାଗ କରନା,
ହୃଷ୍ଟ ଥାଅ
ସବୁ ଅବସ୍ଥାରେ,
ଆଉ, ମଣିଷକୁ ମଧ୍ୟ
ହୃଷ୍ଟକରି ତୋଳ –
ସବୁ ଅବସ୍ଥାରେ,
ଉଦ୍ଦୀପ୍ତ ଅନୁବେଦନାରେ
ସାତ୍ୱତ ସମୃଦ୍ଧିର
ସୁଚାରୁ ସଙ୍ଗୀତ ନେଇ;
ଆଶୀର୍ବାଦ କହିଉଠୁ –
'ଶୁଭମସ୍ତୁ,
ତୁମେ ଧନ୍ୟ ହୁଅ' ।"[୧୨]

– *ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର*

●

# ସହାୟକ ଗ୍ରନ୍ଥପଞ୍ଜି


୧ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୫
୨ - ଅନୁଶ୍ରୁତି - ୪ର୍ଥ ଖଣ୍ଡ - ଆଦର୍ଶ - ୩୭
୩ - ଏଜନ - ଏଜନ - ୪୧
୪ - ଆଲୋଚନା ପ୍ରସଙ୍ଗେ - ବିଂଶଖଣ୍ଡ
୫ - ଦୀପରକ୍ଷୀ - ୫ମ ଖଣ୍ଡ - ତା ୧୭.୧୦.୧୯୫୯
୬ - ଆଲୋଚନା ପ୍ରସଙ୍ଗେ - ଏକ ବିଂଶଖଣ୍ଡ
୭ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୬
୮ - ଅନୁଶ୍ରୁତି - ୧ମ ଖଣ୍ଡ - ସାଧନା - ୫୭
୯ - ଏଜନ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୨୧
୧୦ - ଆଲୋଚନା - ପ୍ରସଙ୍ଗେ - ୧୦ମ ଖଣ୍ଡ
୧୧ - ଏଜନ - ବିଂଶଖଣ୍ଡ
୧୨ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୧୬
୧୩ - ଏଜନ - ଏଜନ - ୧୪
୧୪ - ଆଲୋଚନା ପ୍ରସଙ୍ଗେ - ବିଂଶଖଣ୍ଡ
୧୫ - ଏଜନ - ୯ମ ଖଣ୍ଡ
୧୬ - ଏଜନ - ୩ୟ ଖଣ୍ଡ
୧୭ - ସତ୍ୟାନୁସରଣ
୧୮ - ଆଲୋଚନା ପ୍ରସଙ୍ଗେ - ୧୯ଶ ଖଣ୍ଡ
୧.୯ - ଅନୁଶ୍ରୁତି - ୪ର୍ଥ ଖଣ୍ଡ - ଇଷ୍ଟଭୃତି - ୧୩
୨୦- ଏଜନ - ୨ୟ ଖଣ୍ଡ - ଇଷ୍ଟଭୃତି - ୯
୨୧ - 'ଧୃତିବିଧାୟନା' - ୨ୟ ଖଣ୍ଡ - ବାଣୀ ସଂ. ୧୪୯
୨୨ - ଦୀପରକ୍ଷୀ - ୧ମ ଖଣ୍ଡ - ତା. ୭.୯.୧୯୫୫
୨୩ - ଆଲୋଚନା ପ୍ରସଙ୍ଗେ - ୧୮ଶ ଖଣ୍ଡ

୨୪ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୨୦
୨୫ - ଏଜନ - ଏଜନ - ୧୮
୨୬ - ଆଲୋଚନା ପ୍ରସଙ୍ଗେ - ୧୮ଶ ଖଣ୍ଡ
୨୭ - ଦୀପରକ୍ଷୀ - ୨ୟ ଖଣ୍ଡ
୨୮ - ଆଲୋଚନା ପ୍ରସଙ୍ଗେ - ୨୧ଶ ଖଣ୍ଡ
୨୯ - 'ଆଚାର୍ଯ୍ୟ ସାନ୍ନିଧ୍ୟେ ନିତ୍ୟଦିନ' - ତା.୧୩.୧୨.୨୦୦୧ ମାସିକ
'ଆଲୋଚନା' - ଡିସେମ୍ବର - ୨୦୦୬
୩୦ - 'ଆଚାର୍ଯ୍ୟ ସାନ୍ନିଧ୍ୟେ ନିତ୍ୟଦିନ' - ତା.୨୭.୦୬.୧୯୯୯ ମାସିକ
'ଆଲୋଚନା' - ଡିସେମ୍ବର - ୨୦୦୬
୩୧ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୭
୩୨ - ଆଲୋଚନା ପ୍ରସଙ୍ଗେ - ୨ୟ ଖଣ୍ଡ
୩୩ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୨୮
୩୪ - ଧୃତିବିଧାୟନା - ୨ୟ ଖଣ୍ଡ - ବାଣୀ ସଂଖ୍ୟା ୨୭୭
୩୫ - ଦୀପରକ୍ଷୀ - ୧ମ ଖଣ୍ଡ - ତା. ୨୧.୯.୧୯୫୩
୩୬ - ଆଲୋଚନା ପ୍ରସଙ୍ଗେ - ବିଂଶଖଣ୍ଡ
୩୭ - ଏଜନ - ୧୯ଶ ଖଣ୍ଡ
୩୮ - ଇଷ୍ଟପ୍ରସଙ୍ଗେ - ୧ମ ଖଣ୍ଡ
୩୯ - ଆଚାରଚର୍ଯ୍ୟା - ୧ମ ଖଣ୍ଡ - ବାଣୀ - ୨୮୫
୪୦ - ଧୃତି-ବିଧାୟନା - ୨ୟ ଖଣ୍ଡ - ବାଣୀ ସଂ. ୨୭୫
୪୧ - ଏଜନ - ବାଣୀ ସଂ. ୨୭୬
୪୨ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୧୯
୪୩ - ଆଲୋଚନା ପ୍ରସଙ୍ଗେ - ୧୮ଶ ଖଣ୍ଡ
୪୪ - ଏଜନ - ୨ୟ ଖଣ୍ଡ
୪୫ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୧୩
୪୬ - ଆଲୋଚନା ପ୍ରସଙ୍ଗେ - ବିଂଶଖଣ୍ଡ
୪୭ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୯

୪୮ - ସମ୍ବିତୀ - ବାଣୀ ସଂ. ୩୫୯
୪୯ - ଆଲୋଚନା ପ୍ରସଙ୍ଗେ - ୧୦ମ ଖଣ୍ଡ
୫୦ - ଏଜନ - ବିଂଶଖଣ୍ଡ
୫୧ - 'ଆପସ୍ତମ୍ବଧର୍ମସୂତ୍ର' - ୧୦ମ ଖଣ୍ଡ
୫୨ - 'ଅନୁଶ୍ରୁତି' - ୨ୟ ଖଣ୍ଡ - ଇଷ୍ଟଭୃତି - ୭-୮
୫୩ - ଏଜନ - ୪ର୍ଥ ଖଣ୍ଡ - ଏଜନ - ୧
୫୪ - ଏଜନ - ଏଜନ - ୭
୫୫ - ନାନାପ୍ରସଙ୍ଗେ - ୩ୟ ଖଣ୍ଡ
୫୬ - ଅନୁଶ୍ରୁତି - ୧ମ ଖଣ୍ଡ - ସାଧନା - ୭୦
୫୭ - ଆଲୋଚନା ପ୍ରସଙ୍ଗେ - ୩ୟ ଖଣ୍ଡ
୫୮ - ଅନୁଶ୍ରୁତି - ୨ୟ ଖଣ୍ଡ - ଇଷ୍ଟଭୃତି - ୧, ୩
୫୯ - ଆଲୋଚନା ପ୍ରସଙ୍ଗେ - ୨୨ଶ ଖଣ୍ଡ
୬୦ - ଏଜନ - ବିଂଶଖଣ୍ଡ
୬୧ - କେଷ୍ଟଦା'ଙ୍କ ଦିନ ପଞ୍ଜି - ୧ମ ଖଣ୍ଡ
୬୨ - ବିଧିବିନ୍ୟାସ - ୪୧୦
୬୩ - ଏଜନ - ୨୯
୬୪ - ଅନୁଶ୍ରୁତି - ୧ମ ଖଣ୍ଡ - ସଂଜ୍ଞା - ୧୦୮
୬୫ - ଆଲୋଚନା ପ୍ରସଙ୍ଗେ - ୨୨ଶ ଖଣ୍ଡ
୬୬ - ଏଜନ - ୧୩ଶ ଖଣ୍ଡ
୬୭ - ଅନୁଶ୍ରୁତି - ୧ମ ଖଣ୍ଡ - ସଂଜ୍ଞା - ୬୬
୬୮ - ଏଜନ - ସାଧନା - ୬୦
୬୯ - ଯାଜୀ-ସୁକ୍ତ - ୫
୭୦ - ଅନୁଶ୍ରୁତି - ୫ମ ଖଣ୍ଡ - ଯାଜନ - ୧୨
୭୧ - ଅନୁଶ୍ରୁତି - ୧ମ ଖଣ୍ଡ - ଯାଜନ - ୩
୭୨ - ଆଲୋଚନା ପ୍ରସଙ୍ଗେ - ୫ମ ଖଣ୍ଡ
୭୩ - ଏଜନ - ୧୮ଶ ଖଣ୍ଡ

୭୪ - ଯାଜନ - ସଙ୍କେତ
୭୫ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୧୨
୭୬ - ଏଜନ - ଏଜନ - ୧୯
୭୭ - ଏଜନ - ଏଜନ - ୬
୭୮ - ଏଜନ - ଏଜନ - ୫
୭୯ - ଏଜନ - ଏଜନ - ୧୧
୮୦ - ଆଲୋଚନା ପ୍ରସଙ୍ଗେ - ୧୪ଶ ଖଣ୍ଡ - ୨ୟ ପ୍ରକାଶ - ୫୬ ପୃଷ୍ଠା
୮୧ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୫୧
୮୨ - ଏଜନ - ଏଜନ - ୬୩
୮୩ - ଏଜନ - ଏଜନ - ୫୦
୮୪ - ଏଜନ - ଏଜନ - ୧
୮୫ - ଏଜନ - ଏଜନ - ୨
୮୬ - ଏଜନ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୩୯
୮୭ - ଆଲୋଚନା ପ୍ରସଙ୍ଗେ - ୧ମ ଖଣ୍ଡ
୮୮ - ଅନୁଶ୍ରୁତି - ୧ମ ଖଣ୍ଡ - ଇଷ୍ଟଭୃତି ସ୍ୱସ୍ତ୍ୟୟନୀ - ୪୧
୮୯ - ଏଜନ - ଏଜନ - ୪୭
୯୦ - ଆଲୋଚନା ପ୍ରସଙ୍ଗେ - ୧ମ ଖଣ୍ଡ
୯୧ - ଏଜନ - ୧୦ମ ଖଣ୍ଡ
୯୨ - ଦୀପରକ୍ଷୀ - ୪ର୍ଥ ଖଣ୍ଡ
୯୩ - ଇଷ୍ଟ-ପ୍ରସଙ୍ଗେ - ୩ୟ ଖଣ୍ଡ
୯୪ - ଆଲୋଚନା ପ୍ରସଙ୍ଗେ - ୧ମ ଖଣ୍ଡ
୯୫ - ଅନୁଶ୍ରୁତି - ୧ମ ଖଣ୍ଡ - ସ୍ୱାସ୍ଥ୍ୟ ଓ ସଦାଚାର - ୪୩
୯୬ - ଏଜନ - ଦାମ୍ପତ୍ୟଜୀବନ - ୨
୯୭- ଆର୍ଯ୍ୟକୃଷ୍ଟି - ବାଣୀ ସଂଖ୍ୟା ୧୬୧

●●●



**ଶ୍ରୀ ହୃଷୀକେଶ ଆଚାର୍ଯ୍ୟ :** ଜଗତ୍‌ସିଂହପୁର ଜିଲ୍ଲାର (ଅବିଭକ୍ତ କଟକ ଜିଲ୍ଲା) ତିର୍ତ୍ତୋଲ ଥାନା ଅନ୍ତର୍ଗତ ଲଥାଙ୍ଗ ଗ୍ରାମରେ ସ୍ୱର୍ଗତ ରମାନାଥ ଆଚାର୍ଯ୍ୟ ଓ ସାବିତ୍ରୀ ଦେବୀଙ୍କ କୋଳ ମଣ୍ଡନ କରି ଭୂମିଷ୍ଠ ହୁଅନ୍ତି। ପିଲାଟି ଦିନରୁ ଧର୍ମ, ଆଧ୍ୟାତ୍ମିକତା ଓ ସମାଜ ସେବା ପ୍ରତି ତାଙ୍କର ଆଗ୍ରହ ରହିଛି। ଓଡ଼ିଆ ଭାଷା ଓ ସାହିତ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ଓ ବି.ଏଡ୍. ଡିଗ୍ରୀ ହାସଲ କରନ୍ତି। ଛାତ୍ରାବସ୍ଥାରୁ ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ସତ୍-ଦୀକ୍ଷାରେ ଦୀକ୍ଷିତ ହୋଇ 'ପବିତ୍ର ପାଞ୍ଜା' ପ୍ରାପ୍ତ ହୁଅନ୍ତି ଏବଂ ଶ୍ରୀଶ୍ରୀଠାକୁରଙ୍କ କାମକୁ ମୁଖ୍ୟ କରି ଚାଲନ୍ତି। ୧୯୭୮ ମସିହାରେ ସହ-ପ୍ରତି-ଋତ୍ୱିକ୍ ପାଞ୍ଜାର ଆଶୀର୍ବାଦ ଲାଭ କରନ୍ତି। ମାଧ୍ୟମିକ ଶିକ୍ଷା ବିଭାଗ (ଓଡ଼ିଶା)ରେ ଯୋଗଦାନ କରି ଗରେଇ ଗ୍ରାମ ପଞ୍ଚାୟତ ହାଇସ୍କୁଲ, ଗରେଇରେ ଦୀର୍ଘ ଦିନ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରି ନିକଟ ଅତୀତରେ ଅବସର ଗ୍ରହଣ କରିଛନ୍ତି। ବିଭିନ୍ନ ଭାଷା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ରୁଚି। ଭାଷା ଓ ସାହିତ୍ୟରେ ଅନେକ ଡିଗ୍ରୀ ଓ ଡିପ୍ଲୋମା ହାସଲ କରିଛନ୍ତି। ବିଭିନ୍ନ ମାସିକ ଓ ଦୈନିକ ପତ୍ରପତ୍ରିକାରେ ତାଙ୍କର ଲେଖା ପ୍ରକାଶ ପାଉଅଛି। ଶ୍ରୀଶ୍ରୀଠାକୁରଙ୍କ ଦର୍ଶନ ଉପରେ ସେ ଗବେଷଣାରତ ଏବଂ ତାଙ୍କର ଲେଖନୀ ଚାଳନା ଜାରି ରହିଛି।

– ପ୍ରକାଶକ